# ନୟାଗଡ଼ ପ୍ରତିଭା

(ରାଜ୍ୟପାଳ ପୁରସ୍କାର ପ୍ରାପ୍ତ)


ଲେଖକ—ଆଶୁକବି ଶ୍ରୀ ଶଶୀଧର ଆଚାର୍ଯ୍ୟ

ଗ୍ରାମ-ଜେମାଦେଈପୁରଶାସନ

ପୋ-ବାଲୁଗାଁ, ଭୟା-ନୟାଗଡ଼, ପୁରୀ ।



ପ୍ରକାଶିକା—ସୁଷମା କୁମାରୀ ଦେବୀ

ସହଯୋଗୀ—ଶ୍ରୀ ସତ୍ୟବାଦୀ ମିଶ୍ର,

ଏମ୍. ଏ., ବି. ଇଡ଼.

(ଶିକ୍ଷକ)

ଦ୍ୱିତୀୟ ସଂସ୍କରଣ—ସ୍ୱାଧୀନତା ଦିବସ

ତା।୧୫।୮।୧୯୮୯

ମୁଦ୍ରାକର—ଶ୍ରୀ ଜଗନ୍ନାଥ ପ୍ରଧାନ

ନୀଳାଚଳ ପ୍ରେସ୍, ନୟାଗଡ଼ ।

ମୂଲ୍ୟ—୭ ଟଙ୍କା

# ଅଭିମତ

କବି ଶ୍ରୀ ଶଶୀଧର ଆଚାର୍ଯ୍ୟଙ୍କର "ନୟାଗଡ଼ ପ୍ରଭବ" କାବ୍ୟଟିକୁ ଆମୂଳଚୂଳ ପାଠକରି କବିଙ୍କର ଧୀଶକ୍ତିର ବୈଶିଷ୍ଟ୍ୟ ଆବିଷ୍କାର କଲି । ଇତିହାସ ହେଉଛି ଏକ ଅମୂଲ୍ୟ ସମ୍ପଦ ଯାହାକି ଗୋଟିଏ ଦେଶର କିମ୍ବା ସ୍ଥାନର ହୃତପିଣ୍ଡ କହିଲେ ଅତ୍ୟୁକ୍ତି ହେବ ନାହିଁ । ଏହାକୁ ରୂପଦେବାରେ ବାସ୍ତବତା ଅଧିକ ପ୍ରୟୋଜନ ହୋଇଥାଏ । ମାତ୍ର କଳ୍ପନା ହିଁ କବି ଜୀବନର ଏକ ଏକ ମାଇଲ ଖୁଣ୍ଟ । କବି ଇତିହାସ ପରିବେଷଣ କରିବା ସଙ୍ଗରେ ଯେଉଁ ଅନ୍ତଃଦୃଷ୍ଟି ନିକ୍ଷେପ କରିଛନ୍ତି ତାହା ଚିର ଶାଶ୍ୱତ । ଏହି ବର୍ଣ୍ଣନାରେ ନୟାଗଡ଼ର ରାଜବଂଶ ଓ କ୍ରମିକ ଭାବରେ ସେମାନଙ୍କର ରାଜତ୍ୱ ଓ ଜନହିତ ମୂଳକ କାର୍ଯ୍ୟ, ମନ୍ଦିର, ପାହାଡ଼, ପର୍ବତ, ଅର୍ଥନୀତି, ଧର୍ମନୀତି, ଚିତ୍ରକଳା, କୃଷି, ଶିଳ୍ପ, ସ୍ଥାପତ୍ୟ ଓ ଭାସ୍କର୍ଯ୍ୟ ପ୍ରଭୃତି ଜିନିଷର ଏକ ସୂକ୍ଷ୍ମଦର୍ଶନ ଦିଆ ଯାଇଅଛି । ଏ ଗୁଡ଼ିକର ସଂଗ୍ରହ ଏବଂ ଉପସ୍ଥାପନ ପାଇଁ କବି ବାସ୍ତବିକ ପ୍ରଶଂସନୀୟ । ବସନ୍ତର ଆଗମନରେ ପୃଥିବୀ ପୁଷ୍ପିତ ହେଲାପରି, କବିଙ୍କର ଯଥା-ସ୍ଥାନରେ ଠିକ୍ ଭାଷାରେ ଅବତାରଣା ପାଠକର ମନକୁ ପୁଷ୍ପିତ କରିବାରେ ସହାୟକ ହେବ । ଏହା ନିଃସନ୍ଦେହ ।

ଶେଷରେ ମୋର ଅଭିମତ କବି ତାଙ୍କର ଜୀବନବ୍ୟାପୀ ସାହିତ୍ୟ ସାଧନାରେ ବ୍ରତୀହୋଇ ଦେଶର ସଂସ୍କୃତି, ଗୌରବ ବଢ଼ାଇବା ପଥରେ ଅଗ୍ରସର ହୁଅନ୍ତୁ ।

ଯତୀନ୍ଦ୍ରନାଥ ଖୁଣ୍ଟିଆ
ଉପଜିଲ୍ଲାପାଳ, ନୟାଗଡ଼



ତା।୧୦।୧।୮୮

# ପ୍ରଶସ୍ତି

ନବଦୁର୍ଗ ଭୂଇଁ ଅଟଇ ଶୋଭା ପାଣ୍ଡିତ୍ୟ ଖଣି
ଉପେନ୍ଦ୍ର ଭଞ୍ଜ ସଦାନନ୍ଦ ସୁ କବି ଯଦୁମଣି ॥
ସୁଯୋଗ୍ୟ ସନ୍ତାନ ସଂଖ୍ୟାଏ ଲଭି ଦେବୀଙ୍କ ବର
ହସି ଖେଳୁଅଛି ଧରଣୀ କି ବର୍ଣ୍ଣିବ ସମ୍ଭାର ॥
ଶାନ୍ତି ସୁଖ ଲଭି ଜନନୀ ତୋର କରୁଣା ବଳେ
ଟେକା କୋଳେ ନିବାସ କରନ୍ତି ଅଂଶ୍ରୀପଦ କମଳେ ॥
ଅମୃତ କଟାକ୍ଷ ବର୍ଷିଥା ନବଦୁର୍ଗ ଜନନୀ
ବିପୁଳ ସମ୍ପଦ ଆନନ୍ଦେ ହସିଉଠୁ ଧରଣୀ ॥
ତୋ ବିନା ମା କେ ଅଛି ସାହା ହେବାକୁ ଏବେ
ସଙ୍କଟରୁ ବଳ ଭୁମି ମା ଡାକୁଅଛୁ ସରବେ ॥
ନବଦୁର୍ଗ ଶୋଭା ଦୁର୍ଲଭ ଏହି ମହୀ ମଣ୍ଡଳେ
ଝଣ୍ଡି ଚୀର ଦୁଃଖ ଖଞ୍ଜିଛି ସୁଖ ଜନ ଅନ୍ତରେ ॥
ଅତୁଳ ଉତ୍ସବ ଅନ୍ତରେ ତୋର ସକଳ ଖଣି
ଉଲ୍ଲସିତ ହେବ ସର୍ବଦା ଶୁଣି ଶରୀର ମନ ॥



# ନୟାଗଡ଼ ଅଧିଷ୍ଠାତ୍ରୀ ବାଉରୀଦେବୀଙ୍କ
## ବନ୍ଦନା

ପୂଜ୍ୟ ନବଦୁର୍ଗେ　　କ ପବିତ୍ର ଯୋଗେ
ବିଜେହେଲୁ ବାଉରାଣୀ
ସ୍ୱମାତ୍ରୀ ନନ୍ଦନା　　ଶତ୍ରୁ ବିନାଶିନୀ
ଖଡ୍ଗ ତ୍ରିଶୂଳ ଧାରିଣୀ ।୧

ଗଡ଼ଜାତ ସୈନ୍ୟ　　ବାର ବାଛ କଲେ
ନବଦୁର୍ଗ ଆକ୍ରମଣ
ତୋର ଅନୁକମ୍ପା -　　ବଳେ ରାଜଶକ୍ତି
କଲା ଅରିଙ୍କ ଦମନ ।୨

ନବଦୁର୍ଗ ଆମ　　ପବିତ୍ର ହୋଇଛି
ତୋ ସୁଦୟା ସ୍ପର୍ଶ ଲଭି
ସହାୟ ହୁଅମା　　ତୋହରି ସନ୍ତାନେ
ହୁଅନ୍ତୁ ସୁଜ୍ଞାନୀ ଜନ

ସମସ୍ତ ଶ୍ରୋତରେ　　କେତେ ନରପତି
ବସିଛନ୍ତି ସିଂହାସନେ
ତୋର ଆଶୀର୍ବାଦ　　ହୋଇଛି ପ୍ରଶସ୍ତ
କାର୍ଯ୍ୟ କଳାପ ଦର୍ଶନେ ।୪



# ନୟାଗଡ଼ କିମ୍ବଦନ୍ତୀ

(ରାଗ-ବଙ୍ଗଳାଶ୍ରୀ)

ପିତୃ ସତ୍ୟ ପାଳି          ତେଜି ଗୃହଧାରୀ
ସୀତା ସଉମିତ୍ରୀ ଧରି
ଚଉଦ ବରଷ          କାଳ ବନବାସ
ନେଇ ଅଯୋଧ୍ୟା ନଗରୀ ।୧।

ଏ ଧନ୍ୟ ଧାମରେ          ଏ ପୁଣ୍ୟ ତୀର୍ଥରେ
ନୀଳମାଧବଙ୍କ ଧାମ
ବନବାସୀ ବେଶେ          ମନାସି ହରଷେ
ପୂର୍ଣ୍ଣହେବ ମନସ୍କାମ ।୨।

ଅତି ମନୋହର          ଶ୍ରୀ ନୀଳ କନ୍ଦର
ବିଚିତ୍ର ଦୃଶ୍ୟ ଭାଜନ
ଇଚ୍ଛେକରି ଖେଳା          ବନ୍ଦେ ଶଙ୍ଖୋଦ୍ଭୂଳା
ନଦୀରେ କଣ୍ଡଲେ ତର୍ପଣ ।୩।

ଗଦଗଦ ରଙ୍ଗେ          ସ୍ୱାମୀଙ୍କ ସଙ୍ଗେ
ସତୀ ସୀତା ସୁଲକ୍ଷଣୀ
ଶ୍ରମକୁ ନଡ଼ରି          କର୍ମକୁ ଆଦରି
ସରଗୁ ଅଧିକ ମଣି ।୪।

କନ୍ଦରୁ ବାହାରି                ଶ୍ରୀ ଚମ୍ପୂରେ ସ୍ଥଳି
ବିଟଜଙ୍କନ୍ୟେ ବଲଲମ
ବନଶୋଭା ଦେଖି                ବିଶ୍ରମିବା ପାଇଁ
ମନେ ଚିନ୍ତାକଲେ ରାମ ।୫।
ରତ୍ନରୁ ଖଣ୍ଡ ଭୂଷି                ଙ୍କୋଶଳ ଭୂଷ ରଖି
ଋଷିଗିରି ନାମ ଜାଣ
ରାମ ପାଦ ପଦ୍ମ                ଚଣ୍ଡ ରାମଶବ୍ଦ
ଚିହ୍ନ ଲକ୍ଷ୍ମିଛି ପ୍ରମାଣ ।୬।
ଗ୍ରୀଷ୍ମ, ବର୍ଷା, ଶୀତ                ତାପେ ସନ୍ତାପିତ
ବନଜନ୍ତୁ ପକ୍ଷୀ ମେଳେ
ଭ୍ରମଣ କାନନେ                ଦୁଃଖେ ରାତ୍ରଦିନ
କଷ୍ଟ ପାଇଣ ରହିଲେ ।୭।
ଲିକ୍ଷ ଅନାହାର                ପିନ୍ଧି ବଲକଳ
ସେବା କରି ଚଣ୍ଡିଙ୍କର
ଦୁର୍ଗାଙ୍କୁ ସ୍ମରଣ                କଲେ ରଘୁବୀର
ଚପଳୁ ଭର ଉଦ୍ଧାର ।୮।
ଫଳମୂଳ ଖାଇ                ବରଷେ ବୈଦେହୀ
କାନନେ କଲେ ବିହାର
ଭକ୍ତିଭରେ ଚଣ୍ଡି                ସେବା କରୁଥାନ୍ତି
ସେବ ଝରଣାର ଜଳ ।୯।
ଅଗ୍ରେ ଧନୁର୍ଦ୍ଧାରୀ                ମଧ୍ୟେ ସୀତାନାଥ
ପଶ୍ଚାତେ ଲକ୍ଷ୍ମଣ ବୀର
କନ୍ଧା କାଉପିନ                ବକଳ ପିନ୍ଧଣ
କରେ ଶୋଭେ ଧନୁଶର ।୧୦।

ଭଣ୍ଡାର ଶୃଙ୍ଗରେ    ମାଳଞ୍ଚି ଲତାରେ
ପାଷାଣ ରୂପେ ମହେଶ
ସୀତା ରାମ ପୂଜା    ମନାସିଲେ ମନ
ସଫଳ ହେବ ମାନସ ।୧୧।
ପଥେ ଦେଖି ରମ୍ୟ    ଅତ୍ରିଙ୍କ ଆଶ୍ରମ
କ୍ଲାନ୍ତରେ ସୀତା ପୁଚ୍ଛିଲେ
ସୀତାଙ୍କ ବଚନ    ଏଡ଼ି ନପାରଣ
ଆଶ୍ରମକୁ ଗମନେକଲେ ।୧୨।
ପତ୍ନୀସଙ୍ଗ ଋଷି    ତପସ୍ୟାରେ ବସି
ଯାଗଯଜ୍ଞ କରୁଥିଲେ
ଦୁର୍ବାଦଳ ରୂପ    ସୌନ୍ଦର୍ଯ୍ୟକୁ ଦେଖି
ମହା ଆନନ୍ଦ ଲଭିଲେ ।୧୩।
ଧନ୍ୟହେଲା ନେତ୍ର    ଲଭିଲା ପରଶ
କେବେ ମୁଁ ନଥିଲା ଆଶ
ବ୍ରହ୍ମା ବିଷ୍ଣୁ ଇନ୍ଦ୍ର    ନପାଇ ଯା ଭେଦ
ଯୁଗଯୁଗ ସେବ ସେବି ।୧୪।
ପଲ୍ଲବିତ ଶୋଭା    ଫଳ ଫୁଲ ଲତା
ଦେଖି ସୀତା ରଘୁବୀର
ଫୁଟି ବାସୁଥାଏ    ପେନ୍ଥା ପେନ୍ଥା ହୋଇ
ହରଷେ କଲେ ବିହାର ।୧୫।
ସରସୀର ଜଳ    ଅତି ନିରମଳ
ଫୁଟି ପଦ୍ମ ନୀଳୋତ୍ପଳ
ରାଜୀବକୁ ଦେଖି    ରାଜୀବ ଲୋଚନ
ସ୍ନାନ କରିଲେ ସତ୍ୱର ।୧୬।

ଅତି ମନୋହର — ଶ୍ରୀରାମ ସାଗର
ସେହି ଠାରୁ ନାମହେଲା
ଅତ୍ରିଙ୍କ ଆଶ୍ରମ — ରଘୁନାଥ ଧାମ
ପୀଠ ପର୍ବ ହୋଇଲା ।୧୭।
ସେହିଠାରୁ ଖ୍ୟାତ — ରହିଛି ଜଗତ
କଥା ଅଛି କାଳକାଳ
ହେଲା ମନୋରମ — ଦେବ ଶ୍ରୀଧାମ
ଜଗତେ ଅଟେ ବିରଳ ।୧୮।
ବନଦେଶେ ରାମ — ଗୁଡ଼ ଓଡ଼ଗ୍ରାମ
ଯିବାକୁ ଦକ୍ଷିଣ ପଥେ
ଜଟା ବଳକଳ — ଧରିଣ ସମ୍ବଳ
ସୀତା ସଉମିତ୍ରୀ ସାଥେ ।୧୯।
ଏ ସମୟେ ଋଷି — ଦେବନ ବିଳାସୀ
ଭାଷିଲେ ବଚନ ଗୀର
ମୋର ଏ ଆଶ୍ରମେ — ରହିଣ ଆରାମେ
ଏ ଜନ୍ମ ସାର୍ଥକ କର ।୨୦।
ସନ୍ତଙ୍କ ବଚନେ — ପ୍ରଭୁ ହର୍ଷମନେ
ତଥାସ୍ତୁ ବୋଲି କହିଲେ
ଯୁଗଯୁଗ ବିତି — ଅକ୍ଷୟ କୀରତି
ବସିଲଠୁ ମଣ୍ଡତଳେ ।୨୧।
ଅନୁସୂୟା ସତୀ — ସୀତାଙ୍କୁ ସମର୍ପି
ଅମ୍ଳାନ ବସନ ଦେଲେ
ସ୍ୱୟଂ ସୀତାରାମ — ଆଶ୍ରମେ ଆରାମ
ରହି ବନକୁ ଚଳିଲେ ।୨୨।

## ନୟାଗଡ଼ ଅଧିଷ୍ଠାତ୍ରୀ ବାଉରାଣୀ ମହିମା

(ରାଗ ରସକୁଲ୍ୟା)

ବନ୍ଦଇ ପାଦପଦ୍ମେ ବାଉରାଣୀ
ତୁହି ମାତ ଜଗତ ଠାକୁରାଣୀ
ଇଳବ ଗଡେ ଅଧିଷ୍ଠାତ୍ରୀ ହୋଇ
ଘୋର ସଙ୍କଟରୁ ଉଦ୍ଧାରୁ ତୁହି ଯେ
ନବଦୁର୍ଗ ପୁଣ୍ୟମୟୀ ଯେ
ଶ୍ରୀକୃଷ୍ଣଙ୍କ ସଙ୍ଗ ଜମ୍ବୁବତୀଙ୍କର
ହୋଇଥିଲା ପରିଣୟ ଯେ ।୧।
ଧନ୍ୟ ନବଦୁର୍ଗ ପବିତ୍ର ଭୂଇଁ
ସ୍ୱର୍ଗରୁ ଦେବାଦେବୀ ଟେକେ ହୋଇ
ଋଷି ବଳରାମ ପର୍ବତ ମଧ୍ୟେ
ମହା ସମାରୋହ ହୋଇଲା ଶୁଭେ ଯେ
ଗୀତ ନୃତ୍ୟ ତାନମାନ ଯେ
ସର୍ବ ଦେବାଦେବୀ ପୁଷ୍ପବୃଷ୍ଟି କରି
କଲେ ମଙ୍ଗଳ ବନ୍ଦାଣ ଯେ ।୨।

ଇଳଂବ ଗଡ଼େ ବେଜ ସୂର୍ଯ୍ୟମଣି
ନିଶାର୍ଦ୍ଧ ସମୟେ କଲେ ଭ୍ରମଣି
ସେହି ସମୟେ ବ୍ୟାଘ୍ର ମହାବଳ
ଗୁରୁଙ୍କ ସମ୍ମୁଖେ ଉଭା ସତ୍ୱର ଯେ
ନିର୍ଭୟେ ଅସିକୁ ଟେକ ଯେ
ଏକା ଚୋଟକରେ ମହାବଳ ଶିର
ଉଡ଼ାଇଲେ ତଳେ କାଟି ଯେ ।୩।

ସହସା ଦେଖିଲେ ଦେବୀ ସମ୍ମୁଖେ
ସ୍ୱରୂପ ପ୍ରକାଶି ପୃଚ୍ଛିଲେ ହାସେ
ଏ ଘୋର ଅରଣ୍ୟେ କିଏ ହେ ତୁମେ
ତୁମ୍ଭ କାହିଁ ପାଇଁ କି ଏଣେ ତେଣେ
ଶୁଣିଣ ସଜନ ବାଣୀ ଯେ
ମୁହିଁ ବାଜସଣୀ ଦେବୀ ଠାକୁରାଣୀ
ହେଉଛ କର ନୃପମଣି ଯେ ।୪।

କାଛେଣୀ ପିନ୍ଧି ଦେବୀ ଜଙ୍ଘଦ୍ୱାର
ଘୋର ଅରଣ୍ୟେ ଅଧିଷ୍ଠାତ୍ରୀ ମୁହିଁ
ବହୁକାଳ ପୁରାତନ ମୁଁ ଦେବୀ
ତୋ ବଂଶ ଇଷ୍ଟଦେବୀ ମୁହିଁ ହେବି ଯେ
ସବୁ ଯୁଗଯୁଗ ପାଇଁ ଯେ
ଯେଉଁ ବ୍ୟାଘ୍ର ତୁମ୍ଭ ହାଣିଲୁ ଖଡ୍‌ଗେ
ମୋ ବାହନ ଅଟେ ସେହି ଯେ ।୫।

ବ୍ୟାଘ୍ର ମୁଣ୍ଡ ସନ୍ତକ ହେବ ତୋର
ମୋତେ ରଖ ନେଇ ତୋଳି ମନ୍ଦିର
ଦୁଷ୍ଟ ବୀର କାଟି ଦେବୀଙ୍କ ଶୀର
ନବଦୁର୍ଗ ପୀଠେ ରଖି ହଉର ଯେ
ଖଡଗ ସଙ୍ଗେ ପୂଜା ଶୀର ଯେ
ଅଗ୍ନିକୋଣେ ସ୍ଥାପି ଇଷ୍ଟଦେବୀ ରୂପେ
ବାଜସ ଦେବୀ ପୂଜିଲେ ସେ ।୬।



## ଦୁର୍ଗ ବର୍ଣ୍ଣନା

କେଡ଼େ ଶୋଭା ଦିଶେ ରାଜ ନଗରୀ
ଚଉଦିଗେ ଘେରି ଅଛି ପାଚେରୀ
ଋଷି, ବଳରାମ ବେନ ତଟର
ତରୁଲତା, ଫଳଫୁଲ ଶୋଭିତ ଯେ
ମଣ୍ଡିଛେକେ ରାଜପୁରୀ ଯେ
ଏହି ନବଦୁର୍ଗ ଅଟେ ଧରାସ୍ୱର୍ଗ
ମର୍ତ୍ତ୍ୟଭୂଇଁ ବୈକୁଣ୍ଠ ଯେ, ।୧।

ହସ୍ତି ଅଶ୍ୱଶାଳ ଗୋ ପଶୁ ପାଳ
କାଣ୍ଡ, ଯନ୍ତ୍ରାନଳୀ ବାରୁଦ ଘର
ଧନରତ୍ନ ପରିପୂର୍ଣ୍ଣ ଭଣ୍ଡାର
ଶୁଭ୍ର ସୌଧ ଅଟ୍ଟାଳି ମାଳମାଳ ଯେ,
ଦେଖି ଲାଗଇ ଚାଟକା ଯେ,
ହେବେ ବିଶ୍ୱକର୍ମା ଗଢ଼ିଛି ଏସବୁ;
ଧନ୍ୟ ତା ଚାତୁର୍ଯ୍ୟ ଛଟା ଯେ,



# ନୟାଗଡ଼ ରାଜବଂଶର ରାଜତ୍ୱ

ରାଗ-ବଙ୍ଗଳାଶ୍ରୀ

ଆନନ୍ଦମୟୀ          ମା କରୁଣାମୟୀ
ମା ମୋ ଜନମ ଭୂଇଁ
ଜନମ ଲଭିଲ          ତୋହରି କୋଳରେ
ତୋ ପବିତ୍ର ମାଟିଛୁଇଁ ।୧।

ତୋହରି ସୁବାସେ          ଭଞ୍ଜଧର ହସେ
ଟେଢା ସକଳ ଶରୀର
ଅଛ ସ୍ନେହଭରେ          ପାଳୁଛୁ ମାଆଲେ
ସରଗରୁ ସୁଖକର ।୨।

ମଧ୍ୟ ପ୍ରଦେଶରୁ          ସୂର୍ଯ୍ୟମଣି ଆସି
ସମଲଇ କୃପା ଲଭି
ମା'ଙ୍କ ନିର୍ଦ୍ଦେଶେ          ନୟାଗଡ଼େ ଆସି
ରାଜା ହେଲେ ଜନ ସେବି ।୩।

ବାରସହ ପଞ୍ଚାଁ          ବନ ମସିଦ୍ୱାରେ
ସୂର୍ଯ୍ୟମଣି ଚନ୍ଦ୍ରମଣି
ସ୍ଥାପି ରାଜଧାନୀ          ନବଦୁର୍ଗ ବୁକେ
କଲେ ଅପୂର୍ବ ମଣ୍ଡଣି ।୪।

ପ୍ରଥମେ ଏ ଭୂମି          ଆସି ସୂର୍ଯ୍ୟମଣି
ପୂଜିଲେ ବାଉରୀ ଦେଖି
ଦେବ ଭକ୍ତି ଜସ୍ପୁ          ଗୋବିନ୍ଦ ହିଁଡ଼ ଘେ
ମାଗିଲେ ସୀମା ଚୌହଦ୍ଦ ।୫।

ମହାନ ଧାନୁକ     ବୁଲି ରାଜ୍ୟଯାକ
ଅନେକ ଶିକାର କଲେ
ଚତୁର୍ଥେ ସିଂହାନା     ରାଜ୍ୟ ସୁଶାସନେ
ଆଦରଶ ଦେଖାଇଲେ ।୬

ହରିହର ସିଂହ     ବଜୁତ ସମସ୍ତେ
ବୃକ୍ଷକାଟି କଲେ ରାସ୍ତା
ଭଦ୍ରସିଂହ ଦେବ     କରି ଥଇଥାନ
ସୁଧାରିଲେ ଦୂରବସ୍ଥା ।୭।

କୋର୍ସିଂହ ଦେବ     ହୋଇ ଅତି ଦକ୍ଷ
ରାଇଜ ସୁରକ୍ଷା କଲେ
ପୁଷ୍କରଣୀ ଖୋଳି     ଅନେକ ସ୍ଥାନରେ
ଜଳାଭାବ ଦୂରକଲେ ।୮।

ଘନଶ୍ୟାମ ସିଂହ     ବୁଲିଲେ ଅରଣ୍ୟ
କଲଲେ ବଣ୍ୟ ସମ୍ପଦ
ଜଙ୍ଗଲର ଆୟ     ବିନିଯୋଗ କଲେ
କରି ହିତକର କାର୍ଯ୍ୟ ।୯।

ବଳଶାଳୀ ରଜା     ବାଘାସିଂହ ଦେବ
ଥିଲେ ପ୍ରଧାନ ଶିକାରୀ
ଶିକାର ଉଦ୍ଦେଶ୍ୟ     ବନେ ବୁଲୁଥିଲେ
ରୁଷି ବଳରାମ ଗିରି ।୧୦।

ରୁଷି ବଳରାମ     ମଧ୍ୟେ ଅଧିତ୍ୟକା
ଶଶକ ଆକ୍ରମି ଶ୍ୱାନ
ବଳଶାଳୀ ଭୂମି     ବାଘାସିଂହ ଦେଖି
କଲେ ଦୁର୍ଗକୁ ସ୍ଥାପନ ।୧୧।

ରାଜା କୁତବନ        କରଇଲେ ଭ୍ରମଣ
ନୟାଗିରି ନାମଦେଲେ
କରି ଅନୁମାନ        ସୁବ୍ୟବସ୍ଥା ମାନ
ଝାଲକାଲ ଦେଖିଗଲେ ।୧୨।
ଚଉଦ ବତ୍ସର        ଠାକୁର ସିଂହ ଯେ
ସୁଶାସନେ ଦେଲେ ମନ
ତାଙ୍କର ରାଜତ୍ୱ        ନବଦୁର୍ଗ ମଧ୍ୟେ
ବଢ଼ାଇଲେ ସଙ୍ଖ୍ୟାନ୍ତ ।୧୩।
ତେଇଶ ବତ୍ସର        ରଘୁନାଥ ସିଂହ
ଅନେକ ସୁକର୍ମ କରି
ଜନ ହିତକର        କାର୍ଯ୍ୟମାନ କରି
ବଢାଇଲେ ଯଶରାଶି ।୧୪।
ରାଜ ଅନୁଗ୍ରହ        ପାଇଣ ବ୍ରାହ୍ମଣେ
ସ୍ଥାପିଲେ ଅନେକ ଗ୍ରାମ
କଉଡ଼ା ଭଣ୍ଡା ବ        ଣିଆ ବାଉଁଶିଆ
ଗୋବିନ୍ଦ ପୁର ଶାସନ ।୧୫।
ହରିହର ସିଂହ        ଅତି ଦୟାବନ୍ତ
ପ୍ରଜାନୁରଞ୍ଜନକାରି
ରାମରାଜ୍ୟ କରି        ପ୍ରତିଷ୍ଠା ଏଠାରେ
ବଢ଼ାଇଲେ ରାଜ୍ୟଶିରୀ ।୧୬।
ଗୋକୁଳ ସିଂହଙ୍କ        ବାଲ୍ୟ ସମୟରେ
ବୁଝିନେଲ ରାଜମାତା
ରାଜ ସିଂହାସନ        ଅଳଙ୍କୃତ କରି
ବୁଝିଥିଲ ରାଜ୍ୟ କ୍ଷମତା ।୧୭।

ଗୋକୁଳେଶ୍ୱରଙ୍କ    ଉତ୍ତମ ବ୍ୟବହାରେ
ମୁଗ୍ଧ ହୋଇଲେ ମୁକୁନ୍ଦ
ମହାତ୍ମ୍ୟ ବଦନେ    ସମର୍ପଣ କଲେ,
ତାଙ୍କୁ ମାନଧାତା ପଦ ।୧୮।

ରଣପୁର ରାଜା    ଲଠିହଡା ଠାରେ
ସ୍ଥାପିଥିଲେ ଏକ ଦୁର୍ଗ
ଦୁର୍ଗଦ୍ୱାରେ ଥିଲା    କଂସାର କବାଟ
ଧ୍ୱନି କରଇ ଶବଦ ।୧୯।

ଗଙ୍ଗାଧର ସିଂହ    ମହାବଳୀସ୍ତାର
ଗର୍ବ ନଷ୍ଟାଇଲେ ସନ୍ତ୍ରି
ମହାବୀର ରନ୍    ବନଖା ଉକାଇ
ଛଡ଼ିଦେଲେ ଧକ୍କା ଦେଇ ।୨୦।

କାକଲମା ବୋଲି    ପଡ଼ିଗଲା ସ୍ଥର
ନାମଅଛି ଧକମରା
ପ୍ରମାଣ ଅଛନ୍ତି    କାକଲମା ଗ୍ରାମ
ରହିଅଛି ପଇମରା ।୨୧।

ଗଦାଧର ସିଂହ    ସୁତ ରାମଚନ୍ଦ୍ର
ଗୋଠବଣକୁ ବସାଇ
ସୁନ୍ଦରିଆ ଗ୍ରାମ    ଚନ୍ଦରପୁରକୁ
ସ୍ଥାପିଲେ ସ୍ୱନାମ ଦେଇ ।୨୨।

ଚନ୍ଦ୍ରଶେଖରଙ୍କ    ରାଜୁତି ସମୟେ
ଘୁମୁସର ରାଜାସହ
ଘୋର ଯୁଦ୍ଧେ ସୁନା    ମୁଣ୍ଡି ଅଞ୍ଜଳକୁ
କରିଣ ଥିଲେ ବଜାୟ ।୨୩।

ବ୍ରଜ ପାଇକର        ଲଢ଼ିଲାଟି ପଣ୍ଡ
ଶତ୍ରୁଙ୍କୁ ପରାସ୍ତ କଲେ
ସନ୍ତୋଷରେ ରାଜା        ଦଣ୍ଡୋର ମଜଜା
ଜାଗିର ସ୍ୱରୂପ ଦେଲେ ।୨୪।
ସ୍ୱନାମାନୁସାରେ        ଗଢ଼ିଥିଲେ ଗ୍ରାମ
ଚନ୍ଦ୍ରଶେଖର ପୁର
ରାଣୀକୃଷ୍ଣାଦେଇ        କୃଷ୍ଣାଦେଈ ପୁର
ସ୍ଥାପନ କଲେ ସତ୍ୱର ।୨୫।
ଆଶ୍ୱିନ ମାସରେ        ଶୁକ୍ଳ ଦ୍ୱାଦଶୀରେ
ବିଷ୍ଣୁ ଆଗ୍ରହେଁ ଆସିଲେ
ଯାଗ ଯଜ୍ଞକରି        ସୋମାଦେଇ ପୁର
ତାଙ୍କୁ ସ୍ଥାପନ କଲେ ।୨୬।
ପୁରୁଷୋତ୍ତମ ଦେବ        ସୋମାଦେଈ ନାମେ
ସୋମାଦେଇ ପୁର ଦେଲେ
ବରପଲ୍ଲୀ ପୁରୁ        ଷୋତ୍ତମ ପୁରକୁ
ନାମିତ ସେ କରାଇଲେ ।୨୭।
ମୃତ୍ୟୁଞ୍ଜୟ ସିଂହ        ରାଜତ୍ୱ ବିଖ୍ୟାତ
ଅନେକ ସୁକର୍ମ କରି
ଓଡ଼ଗ୍ରାମେ ଅତି        ମୁନିଙ୍କ ଆଶ୍ରମେ
ମଣ୍ଡପ କଲେ ତଥାର ।୨୭।
ଶିଳ୍ପୀ ବଇରାଗୀ        ସୁତୀକ୍ଷ୍ଣ ଚାତୁର୍ଯ୍ୟରେ
ମୂରତି ଗଠନ କଲେ
ଶ୍ରୀରାମ ଲକ୍ଷ୍ମଣ        ସୀତା ହନୁମାନ
ମଣ୍ଡପେ ସ୍ଥାପନା କଲେ ।୨୮।

ଗୋପିନାଥ ଦେବ    ସପନେଶ୍ୱରଙ୍କୁ
ନୟାଗଡ଼େ ସେ ସ୍ଥାପିଲେ
ଅଟପୃ କରନ୍ତ    କାଳକାଳ ପାଇଁ
ମର୍ତ୍ତ୍ୟମଣ୍ଡଳେ ରଖିଲେ ।୨୯।
ବନାପୁର ସିଂହ    ବନାପୁର ପୁର
ସ୍ୱନାମେ ଭଣଣ କଲେ
ମାନଧାତା ପୁତ୍ର    ଢଡ଼ୁଆଳ ଗ୍ରାମ
ଚଢି ଯଶ ରଖିଗଲେ ।୩୦।
ସାବତ୍ରୀ ଦେଈଙ୍କ    ନାମ ଅନୁସାରେ
ଶାବଦେଈ ପୁର ସ୍ଥାପି
ବସାଇ ଶାସନ    ଦେଲେ ବହୁ ଦାନ
ଖଞ୍ଜି ଦେଲେ ଜମି ମାପି ।୩୧।
ନୟାଗଡ଼େ ଚୋଳ    ସୁନ୍ଦର ମନ୍ଦିର
ଜୟଧ୍ୱଜା ଉଡ଼ାଇଲେ
ଜଗନ୍ନାଥ ବଳ    ଭଦ୍ର ସୁଭଦ୍ରାଙ୍କୁ
ସିଂହାସନେ ସ୍ଥାପିଲେ ।୩୨।
ବଭନ୍ଧ ରଜାଙ୍କ    ରାଜତ୍ୱ କାଳରେ
ଅନେକ ବ୍ରାହ୍ମଣ ଆଣି
ନୟାଗଡ଼ ମଧ୍ୟେ    ଶାସନ ବସାଇ
ଖଞ୍ଜିଦେଲେ ଦାନାପାଣି ।୩୩।
ଅନେକ ସ୍ଥାନରେ    ମଠ ବାଡ଼ି କରି
ଖଞ୍ଜିଲେ ଭୂମି ଅପାର
ରବର କୈବଲ୍ୟ    ଖୁର ପଦ୍ମଖାରି
ପଲ୍ଲୀ ପଦ୍ମାଦେଈ ପୁର ।୩୪।

ହରିହର ପୁର		କାଉଁଶ ଗାଡ଼ିଆ
ନଳାଦ୍ରି ପୁର ଶାସନ
ଜଗନ୍ନାଥ ପୁର		ଗୃହାଳୀ ପଞ୍ଚ ମୂ
ମୃତ୍ୟୁଞ୍ଜୟପୁର ଦାନ ।୩୫।
ବରଡ଼ିହ ମିଶି		ଷୋଳ ଶାସନକୁ
ବସାଇ ଭୂମି ଖଞ୍ଜିଲେ
ଏନ୍ଥପରି ରାଜା		ପ୍ରଜାଙ୍କୁ ସାହାଯ୍ୟ
ଦେଇ ଥଇଥାନ କଲେ ।୩୬।
ବ୍ରାହ୍ମଣ ଶାସନ		ସ୍ଥାପିତ ହୋଇଲା
ରାଜାଙ୍କ ଅନୁଗ୍ରହରେ
ଗଡଜାତ ମଧ୍ୟେ		ବ୍ରାହ୍ମଣ ରହିଲେ
କାଳଙ୍କଟାଇ ସୁଃଖେ ।୩୭।
ବ୍ରଜବନ୍ଧୁ ପୁର		ନାମରେ ସେ ଗ୍ରାମ
ବ୍ରଜବନ୍ଧୁ ମୂହଲେଷ
ଯଦୁମଣିଙ୍କର		କାବ୍ୟକ ପ୍ରତଖ
ଚାହାଁଇଲେ ଦେଶେ ଦେଶେ ।୩୮।
ନକ୍ଷତ୍ର ମାଳମ୍ମା		ରାଣୀଙ୍କର ନାମେ
ନକ୍ଷତ୍ର ପୁର ରଖିଲେ
ଶତ ଶତ ଲୋକ		ବହୁ ଦୂରୁ ଆଣି
ବସବାସ କରାଇଲେ ।୩୯।
ଲଡୁ କଣ୍ଠରଙ୍କ		ରାଜୁତ୍ୱ ସମୟେ
ଯଗୁ ଜମ୍ବୁ ଲଭ କରି
ଜଣି ଦମୁହଁଖଲ		ରାଜାଙ୍କୁ ସମରେ
ପାଉଥିଲେ ଜମି ବାଡ଼ି ।୪୦।

ଗୃହ ଖଣ୍ଡି ଗ୍ରାମ      ନିଜ ନାମେ ଦେଲେ
ଶ୍ରୀ ଲଡୁକେଶ୍ୱର ପୁର
ସକଳ ସୁବିଧା      କରି ଦେଇଥିଲେ
ଚଳାଚଳ ପ୍ରଜାଙ୍କର ।୪୧।
ବଳଭଦ୍ର ସିଂହ      ସାହେବ ସମ୍ମୁଖେ
ଦେଲେ ପ୍ରଶ୍ନର ଉତ୍ତର
ପାଇଣ କ୍ଷମତା      ଚାଳିଲେ ପରଜା
ସୁଖେ ପ୍ରଜା ବର୍ଗଙ୍କର ।୪୨।
ରଘୁନାଥ ସିଂହ      ଗାଦି ପାଇବାରୁ
ଖଣ୍ଡପଡ଼ା ରଜା ବାଧା
ସକଳ ପରଜା      ସମର୍ଥନ କଲେ
ରଘୁନାଥ ସିଂହ ଦାବୀ ।୪୩।
ନାରାୟଣ ସିଂହ      ରାଜୁତ୍ୱ ସମୟେ
ଖଞ୍ଜି ଦେଲେ ଦାନାପାଣି
ଦରିଦ୍ର ଜନର      ଦୁଃଖ ହରୁଥାନ୍ତି
ଦେଉଥାନ୍ତି ମନ ଜାଣି ।୪୪।
ଓଡ଼ଗ୍ରାମେ ଠାକୁ      ସୁନ୍ଦର ମନ୍ଦର
ବନାଇଲେ ରଘୁନାଥ
ରାମ ପୀଠସ୍ଥଳୀ      ରୂପେ ନୟାଗଡ଼
ଭୂମି ହୋଇଲା ପବିତ୍ର ।୪୫।
କୃଷ୍ଣଚନ୍ଦ୍ର ସିଂହ      ପାଇ ସିଂହାସନ
କଲେ ନାନା ଉପକାର
ନୟାଗଡ଼ରେ ଉଚ୍ଚ      ବିଦ୍ୟାଳୟ ନାମ
ଦେଲେ ବ୍ରଜେନ୍ଦ୍ର କିଶୋର ।୪୬।

ପରଜା କଲ୍ୟାଣେ  ନାନା କର୍ମମାନ
କଲେ କୃଷ୍ଣଚନ୍ଦ୍ର ସିଦ୍ଧ
ତାଙ୍କର ଅଷଯୁ  କୀର୍ତ୍ତି ଚୌଦିଗେ
ବ୍ୟାପିଲା କୁସୁମ ପ୍ରାୟ ॥୪୭॥
ନିଜ ନାମେ ଦେଇ  କୃଷ୍ଣଚନ୍ଦ୍ର ପୁର
ଥଇଥାନ କଲେ ପ୍ରଜା
ଜମିବାଡ଼ି ଖଞ୍ଜି  କର୍ମ ଯୋଗାଇଲେ
କୃଷ୍ଣଚନ୍ଦ୍ର ମହାରାଜା ॥୪୮॥
ସୌଭାଗ୍ୟ ମଞ୍ଜୁଷା  ଦକ୍ଷିଣ କାଳୀଙ୍କ
ଖାଞ୍ଜି ଦେଲେ ଜମିବାଡ଼ି
ରଖିଥିଲେ ଭକ୍ତ  ଦେବାଦେବୀ ବପ୍ରେ
ଅନ୍ତର ପବିତ୍ର କରି ॥୪୯॥
ବାଣ୍ଟି ବାଣ୍ଟି ଜମି  ବାଣ୍ଟି ଦେଇଛନ୍ତି
ଶୂଦ୍ର ଜାତି ଆନ ପାଇଁ
କଏ କେତେ ଖାଇ  ସୁଖେ ଭୋଗେ ରହି
ଝୁରେ ନୃପ୍ତାଗଙ୍କୁ ଭଇ ॥୫୦॥
ଗ୍ରହ ଶାନ୍ତି ପାଇଁ  ରାଜ ପ୍ରାଙ୍ଗଣରେ
ଅନୁଷ୍ଠିତ ଜାଗଯଜ୍ଞ
ବଡ଼ ବଡ଼ ଶ୍ରେଷ୍ଠ  ପଣ୍ଡିତ ଡ଼କାଇ
ନରେଶ କଲେ ସମ୍ମାନ ॥୫୧॥
ରାଜ ସିଂହାସନେ  ବସି ନୃପଗଣ
କରଣ ନାନା ଉନ୍ନତି
ଗୋ ବ୍ରାହ୍ମଣ ଭକ୍ତ  ମାନସି ଆଚରି
ରଖିଲେ ନାନା କୀର୍ତ୍ତି ॥୫୨॥

ଷୋଳ ଶାସନ ବ          ଷଣ କରିବାଡ଼
ବିଭିନ୍ନ ସ୍ଥାନେ ବସାଇ
ଅନେକ ନିଷ୍କର          ଭୂମିଦାନ କଲେ
ବ୍ରାହ୍ମଣ ସନ୍ତୋଷ ପାଇଁ ।୫୩।
ନିଷ୍କର ଜମିକୁ          ଜଳସେଚ କରି
ହୋଇଲେ ବ୍ରାହ୍ମଣ ଶାନ୍ତ
ଶୁଭ ଆଶୀର୍ବାଦ          ଢାଳିଲେ ସର୍ବଦା
ନୃପତିଙ୍କ ହିତ ଚିନ୍ତି ।୫୪।
ରାଜ ବଂଶ ବୀର          ବ୍ରଜେନ୍ଦ୍ର କିଶୋର
ନୟାଗଡ଼ ରହିଥାଇ
ଜ୍ୟେଷ୍ଠ ପୁତ୍ର ଶ୍ରେଷ୍ଠ          ମକୁଟ ମଣି ସେ
ଆସନ ଥିଲା ତାଙ୍କର ।୫୫।
ଇଷ୍ଟ ବାଗୀଶ୍ୱରୀ          ପୂଜା ପର୍ବ ପାଇଁ
ଦଶହରା ଦିନ ବିଜେ
ରାଜବଂଶ କୀର୍ତ୍ତି          ପୂର୍ବ ସିଦ୍ଧି ବଧି
ମଣ୍ଡିଲେ ମଙ୍ଗଳ କାର୍ଯ୍ୟ ।୫୬।
ବର୍ଷକେ ଥରେ          ଗୁଣ୍ଡିଚା ଯାତରେ
କରନ୍ତି ଛେରା ପହଁରା
ପୂର୍ବ ଗଜପତି          ରାଜବଂଶ ସମ
ରଖିଛନ୍ତି ପରମ୍ପରା ।୫୭।
ଅମରେନ୍ଦ୍ର ସିଂହ          ଉଦାର ହୃଦୟେ
ଅଯୁତ ଟଙ୍କାକୁ ଦେଲେ
ମହିଳା କଲେଜ          ପାଇଲା ସାହାଯ୍ୟ
କାଳକୁ କଥା ରଖିଲେ ।୫୮।

ବଣିକ ସଙ୍ଘକୁ                ଭୂମୀଦାନ କଲେ
ତୋଳିବା ପାଇଁ ମନ୍ଦିର
ଜନଗଣ ମଧ୍ୟେ                ହୋଇଲେ ଶ୍ରଦ୍ଧେୟ
କରି କେତେ ଉପକାର ।୫୯।



## ନୟାଗଡ଼ର ପ୍ରାକୃତିକ ଦୃଶ୍ୟ

ରାଗ-ବଙ୍ଗଳାଶ୍ରୀ

ନବଖଣ୍ଡ ଦୀପ୍ତି                ପ୍ରକାଶିତ ହେଲା
ନବଦୁର୍ଗା ନାମ ଖ୍ୟାତ
ଦେଶେ ଦେଶେ ଖ୍ୟାତ                ହେଲା ଉଦ୍ଭାସିତ
କଳା କୌଶଳ ଖଚିତ ।୧।

ନବଦ୍ୱଗ୍ ଚନ୍ଦ୍ର                ଦଗରେ ଶୋଭଇ
ପାହାଡ଼ ପାଟେଶ୍ୱ ସମ
ମଧ୍ୟରେ ଶୂନ୍ୟଥା                ପର୍ବତ ବସ୍ତଳେ
ହୋଇ ଅଛି ଅନୁପମ ।୨।

ଉତ୍ତରେ ବସ୍ତଳେ                ରାଜଗିରି ଶୈଳ
କଇଁଥର ଦ୍ୱାରଦ୍ୱାର
ଦକ୍ଷିଣେ ପ୍ରାଚୀର                ସମରନ୍ଧ୍ର ମାଳା
ଚକାଥାନ୍ତି ହାତୀ ଦ୍ୱାର ।୩।

ହସ୍ତିମରେ ଚଞ୍ଚୁ    ପାଣ୍ଡ୍ରବ ଚାଲବା
ଝଗଜେ ବାଦ୍ଧଣ ଖୋଲ
କଟିରେ ମେଖଳା    ପ୍ରାପ୍ତ ଶୋଭା ପାଏ
ପୃଷ୍ଠୁବେ ଶୁବରମଲ୍ଲ ।୩।
ବନଜାତ ଦ୍ରବ୍ୟ    ହର୍ଷଦ ସମ୍ପାଦ
ରଖି ଅନ୍ତର ଭିତରେ
ହଅର ଶବର    ଫଳମୂଳ ଫୁଲ
ଭୁଞ୍ଜି ପେଟ ପୋଷିପାରେ ।୪।
ଟେମ୍ପୁଲ ସିଙ୍ଗି ପ-    ଙ୍କ ହାଣ୍ଡିମୁଣ୍ଡା
ଚେଚା ଅଙ୍ଗର ଅଳଙ୍କାର
ହରେ ଅଳଂକୃତ    ଶୁକଆ ମୁକୁଟ
ନବଦୁର୍ଗା ଜନନୀର ।୫।
ଚୁଖି ବଳଗ୍ରାମ    ମଳୟ ପବନ
ବହୁ ଅଛନ୍ତି ସଦ୍ଧିର
ନବଦୁର୍ଗା ମାତ    ରକ୍ଷିକୁ ଆନନ୍ଦେ
ନାହିଁ ଭାବନାକୁ ଖାତର ।୬।
ଗୀରି କନ୍ଦରରୁ    କୁଳୁକୁଳୁ ନାଦେ
ପ୍ରବାହିତ ନଦନଦୀ
ତରଙ୍ଗରେ ଆସି    କୁସୁମିରେ ପଶି
ମିଶିଛନ୍ତି ମହାନଦୀ ।୭।
ଦୁଆଣ୍ଟ ସହିତ    ନଳ ପାଟ ଡୋର
ଡାହୁକା ଗଳାର ହାର
ପାଦର ଘୁଙ୍ଗୁର    ନଗ୍ନ ନାଗଙ୍କର
କୁଳୁକୁଳୁ ମୁଖଗିର ।୮।

କୁସୁମି ତରଙ୍ଗ ଶୋଭେ ନାନା ଢଙ୍ଗ
ଝୁଲୁଝୁଲ ଧାଇ ଧାଇ
କଳକଳ ବନ୍ୟା ଘୁଘୁନାଦ ହୋଇ
କରେ ଶବଦ ଝଙ୍କାରି ।୧୦।
ଧନ୍ୟ ଚିର ସ୍ରୋତେ ବଞ୍ଚନ୍ତି ସଭିଏଁ
ତୋ କରୁଣା ଦାନ ପାଇ
ତୋହର ଆଶ୍ରୟେ କୂଳେ ବାସ କରି
କ୍ଷୁଧା ତୃଷା ନ ବାଧଇ ।୧୧।
ପ୍ରବାହି କୁସୁମୀ ନଦୀ ମନ୍ଦାକିନୀ
କୂଳରେ ଶରଣ କୂଳେ
ଶରଣ ବତ୍ସଳ ବାବା ଲଡୁକେଶ
ମନ୍ଦରେ ପତାକା ଉଡ଼େ ।୧୨।
ପରଜା ରଞ୍ଜନ ଶ୍ରୀରଘୁନନ୍ଦନ
ସଙ୍ଗେ ଜାନକୀ ଲକ୍ଷ୍ମଣ
ସୁବର୍ଣ୍ଣ କଳସ ମନ୍ଦରେ ଝଟକେ
ମହାପୂଣ୍ୟ ଉଡଗ୍ରାମ ।୧୩।
ନସ୍ୱାଗତେ ଖ୍ୟାତ ଜଗତର ନାଥ
ସାଗର ପାରୁଶେ ଜାଲୀ
ତୁଙ୍ଗ ଗିରି କୋଳେ ସ୍ନେହ ଭରେ ଖେଳେ
ଜଗତ ମାତ ତାରିଣୀ ।୧୪।
ବ୍ୟାସ ପରାଶର କଶ୍ୟପ ସମାନ
ଜନ୍ମ ଭୂମୀ ଆଶ୍ରା ନେଇ
ଗଡର ଗୌରବ ବାନା ରଖିଛନ୍ତି
ଭାଳ ସଭଙ୍କୁ ମଣ୍ଡାଇ ।୧୫।

ବାଉଁଶମୂ ଅଢ଼      ଟେଟେଇ ଦେବାଦେଖା
ଲୋକେ କରୁଛନ୍ତି କୋଳେ
ଖଞ୍ଜି ଦେଉଅଛୁ      ଭୁଞ୍ଜିବା ପାଇଁକ
ଫୁଲଫଳ ଆନନ୍ଦରେ ।୧୬।
ବନବାସ କାଳେ      ପାର୍ଥ ପାଣ୍ଡବର
ଏଇ କାନନ ଭିତର
ବନ ଫଳ ମୂଳ      ଭୁଞ୍ଜି ରହୁଥିଲେ
ପଞ୍ଚୁ ପାଣ୍ଡବ କନ୍ଦର ।୧୭।
ଘୋଡ଼େଇ ନୟାଗଡ଼      ଅଟନ୍ତୁ ଶୀତଳ
ଲୌହ ଶଙ୍ଖ ଯୋଡ଼ା ଯୋଡ଼ା
ଯାନ ବାହନର      ଚଳାଚଳ ପାଇଁ
ନଙ୍ଗ ମଧ୍ୟେ ହେଲ୍ ଗଢ଼ା ।୧୮।
ଦେଶ ବିଦେଶରେ      ପୂରି ରହିଛନ୍ତି
ନୟାଗଡ଼ର ସନ୍ତାନେ
କର୍ମଶ୍ରେଷ୍ଠ ରୂପେ      ଶାସନ କରନ୍ତି
ମଣ୍ଡି ପକାନ୍ତି ସୁଗୁଣେ ।୧୯।
ଈଶ୍ୱର ପାଦ ମ-      ଲ୍ଲି ମୋହନ ଗୁରୁ
ଥିଲେ ଶିଳ୍ପୀ କାରିଗର
ଗୋବିନ୍ଦଚନ୍ଦ୍ର ଶୁର-      ଦେଓ ନାଟ୍ୟକାର
ଗୋପୀ ସାନ୍ତ୍ୱ ଏଠାରେ ।୨୦।
କଳଲାଇ ପଲ୍ଲୀ      ଲିଙ୍ଗରାଜ ମିଶ୍ର
ଥିଲେ ଏକ ଆଦର୍ଶ
ସୌଭାଗ୍ୟ ମଞ୍ଜୁଷା      ନାଟ୍ୟଗ୍ରନ୍ଥ କରି
ବଢ଼ିଲା ତାଙ୍କ ପୌରୁଷ ।୨୧।

ସୁଦୂର ପଲ୍ଲୀରେ ଉଚ୍ଚ ବିଦ୍ୟାଳୟ
ମାଇନର ସ୍ଥାପନ କଲେ
ଶରଣକୁଳରେ ଡାକଘର ଖାନା
କରି ଆଦରଣୀୟ ହେଲେ ।୨୨।

ଏଣୁ ନୟାଗଡ଼ ପୁଣ୍ୟଭୂମି ବୋଲି
ଲୋକ ମୁଖେ ଜଣାଶୁଣା
ନୟାଗଡ଼ ଛାଡ଼ି ଯିବାକୁ ଅନ୍ୟତ୍ର
କର୍ମିଗଣ ମନ ଊଣା ।୨୩।

ଦେଶ ବିଦେଶରୁ ଆସି ବ୍ୟବସାୟୀ
ଗଢ଼ି ନିଜ କର୍ମକ୍ଷେତ୍ର
ନୟାଗଡ଼ ବୁକେ କରିଲେ ପ୍ରସାର
ସୁ ବ୍ୟବସାୟ ସହିତ ।୨୪।

ଧନ୍ୟ ନୟାଗଡ଼ ଶରଗରୁ ବଡ଼
ହୋଇଛି ଜଗତ କର୍ତ୍ତା
ବିଭିନ୍ନ ପ୍ରକାର କାରଖାନା କଲ
କରିଅଛି ଜନହିତା ।୨୫।

ଦାତବ୍ୟ ପଥରେ ନାରଣ ବେହେରା
ପଣ୍ଡିତ ଶ୍ରୀ ବିନାୟକ
ସୁପଣ୍ଡିତ ଥିଲେ ସାର ମହାପାତ୍ର
ଥିଲେ ଗଉରବ ଟେକ ।୨୬।

ବଡ଼ ପାଠାଗାର ଉଦୟ ପୁରରେ
ନୟାଗଡ଼ ଗଉରବ
କେତେ ଗୁଣୀ ଜ୍ଞାନୀ ଲଭିଛନ୍ତି ଯଶ
ବଢିଛି ଦେଶ ବିଭବ ।୨୭।

ମାଣିକ ପାଟଣା ହାଟେ ବଢାକଣା
ନଷ୍ଟଦ୍ୱନଅ ଦରବ
ଜନ ସମାଗମେ ହସି ଉଠେ ହାଟ
ଭାଷାରେ ବର୍ଣ୍ଣି ନୋହିବ ।୨୮।
ବାଲୁଗ୍ରାମ ଚଣ୍ଡୀ କୂଳେ ହାଟ ବସି
ହୁଏ ଯାତ ଦଣ୍ଡବୋଲ
ଇଟାମାଟି ହାଟ ଅମୂଲ୍ୟ ସମ୍ପଦ
ଗଉଳ ଲକ୍ଷ୍ମୀ ବଜାର ।୨୯।



## ॥ ନୟାଗଡ଼ କବିଙ୍କ ପରିଚୟ ॥

ଉତ୍କଳର ଘଣ୍ଟେ ଯଦୁମଣି ଶ୍ରେଷ୍ଠ
ଉପେନ୍ଦ୍ର କବି ସମ୍ରାଟ
ହାସ୍ୟରସ ଲେଖା କବିତା ଚାତୁର୍ଯ୍ୟ
ଦେଖାଇଅଛନ୍ତି ବହୁତ ।୧।
ଜନମି ଭିଖାରୀ- ଓଳାରେ ଖ୍ୟାତ
ଅଭିମନ୍ୟୁ ସଦାନନ୍ଦ
କବିତା ମୂର୍ଚ୍ଛନା ସୁରଲ କଣ୍ଠୁ
ବ୍ୟାପିଗଲା ଚତୁର୍ଦ୍ଦିଗ ।୨।

ରଜା ବିନାୟକ ସିଂହ ମାନଧାତା
ରାଜକବି ବୋଲାଇଲେ
କବି ନିତ୍ୟାନନ୍ଦ ଠାକୁରାଣୀ ସେବ
ମହାକାବ୍ୟକୁ ରଚିଲେ ।୩।
ହରେକୃଷ୍ଣ କବି ବିଦ୍ୟାଧର ଥିଲେ
ଶାସ୍ତ୍ରରେ ମହାପଣ୍ଡିତ
ଗୋପାଳ ଦାସ ଯେ ଥିଲେ ମହାଭକ୍ତ
ଜନ ମାନସରେ ଖ୍ୟାତ ।୪।
କବି କାମପାଳ ରଚନା ସୁନ୍ଦର
ନୟାଗଡ ହେଲ୍ ଖ୍ୟାତ
ରଘୁନାଥ ଦାସ ରଙ୍ଗ ଭଙ୍ଗୀ ରସ
ଲେଖିଥିଲେ ଦଣ୍ଡନାଟ ।୫।
ନିମାଇଁ ଚରଣ ଆନନ୍ଦ ମିଶ୍ର ଯେ
ହରିପାଦ ରାମଲୀଳା
ଚିଅବନ୍ଧେ ଲେଖ ନାଥ ପାଠଶାଣୀ
ଝୁରୁଅଛି ଉପଧାର ।୬।



# ମଲ୍ଲବୀର ଜଗୁରାଉତରା

ମଲ୍ଲବର ଜଗୁ ମହାବଳୀୟାର
କୁଜଙ୍ଗ ଦଣ୍ଡିକୁ ଜିଣି
ନୟାଗଡ଼ ମାନ ବଜାୟୁ ରଖିଲ
ରହିଛି ଜନ କାହାଣୀ ।୧।

ମହା ମହା ରଥୀ ଗଲେ ରଣେ ହଟି
କେହି ନ ପାରିଲେ ଜିଣି
ଠେଙ୍ଗା ଦଉଡରେ ଜଗୁ ରାଉତରା
ପିଟିଲା ଶତ୍ରୁ ଗୁଣ୍ଡଣୀ ।୨।

ସାଗର ଟଙ୍ଖାଲାଇ ବନ୍ଧକୁ ପକାଇ
ଜଗୁ କଲା ନିଜ ହାତେ
ହାଣ୍ଡି ଲଞ୍ଜି ଭଡ଼ ହାଟକୁ ରଖିଲା
ଭୀତ ହୋଇଗଲେ ସମସ୍ତେ ।୩।

ଖଜୁରୀ ବୃକ୍ଷକୁ ଉପାଡ଼ି ଦେଲା ସେ
ଗୃହ୍ନିଁ ଗୃହ୍ନିଁ ବାହୁ ବଳେ
ଧନ୍ୟ ସେହି ବୀର ମହାବଳୀୟାର
କଥାଅଛି କାଳେ କାଳେ ।୪।

ଗଡ଼ଜାତ ସୈନ୍ୟ ଚଉଦିଗୁ ଆସି
ଗଡ଼କୁ ଦଖଲ କଲେ
ବାହୁବଳେ ଯୋଦ୍ଧା ଜଗୁ ରାଉତରା
ରାଜପଦ ଦମ୍ଭ ଟଳେ ।୫।

କୁଶଳ ଚାଇତ ସବୁଠି ନିତିକି
ହୁଙ୍କାର ପକାଏ ଡାକ
ଦେଶ ପାଇଁ ପ୍ରାଣ ମୂରୁଛି ଦେଉଛି
ରଖିଲୁ ବଇଜ ଟେକ ।୭।



## ନୟାଗଡ଼ର ପ୍ରସିଦ୍ଧ ତାନ୍ତ୍ରିକ

ତାନ୍ତ୍ରିକ ବଳରେ ରାମଭଞ୍ଜ ବ୍ରହ୍ମା
ପଞ୍ଚ ପାଣ୍ଡବ ଜଣକ
ପାଞ୍ଚୋଟି ଖଡ୍ଗକୁ ଖର୍ଗି ଦେଉଥିଲେ
ଜଥାଅଛି କାଳକାଳ ।୧।
ରଜାଙ୍କ ଆଦେଶେ ତାନ୍ତ୍ରିକ ବଳରେ
ଲୁଣୀ ବଳରାମ ଯୁଦ୍ଧ
ଘଟାଇ ସହସା କରିଲେ ତାମସା
ନୃପତି ହୋଇଲେ କ୍ରୁଦ୍ଧ ।୨।
ରୁଷି ପ୍ରାସାଦରେ ରାତ୍ରି ବିନୋଦନେ
ନୃପତି ଅଜଣ ଥିଲେ
ହଠାତ୍ ଆଦେଶି ବ୍ରହ୍ମାଙ୍କୁ କହିଲେ
ରାଣୀଙ୍କୁ ଅଣାଅ ଭଲେ ।୩।

ଶୂନ୍ୟମାର୍ଗେ ବାଣୀ ଚଦନ୍ତି ସେଠାରେ
ଜଳେ ଶମ୍ଭୁଙ୍କୁ ଦର୍ଶନ
ମହା ରାଜାଙ୍କର ଆଶ୍ଚର୍ଯ୍ୟ ଘଟେକ
ବଢିଗଲା ସତଗୁଣ ।୪



ଅଇଲା ସାପୁଆ କେଳା ଏକଜନ
ଦେଖାଇବାକୁ ତା ଖେଳ
ବଧାର ସାମନ୍ତ ଭଆଁଇ ଚମକ
ଘର୍ଗି ଦେଲେ ତାର ଗେଲ ।୧।
ଖେଳ ଦେଖାବା ଆରମ୍ଭ ପୂର୍ବରୁ
ମନ୍ତ୍ର କରି ବଧାର
ପେଡ଼ିରୁ ନେଇଣ ବଢଲେ ସର୍ପଙ୍କୁ
ନିଜ ବାଡ଼ି ବୃକ୍ଷପର ।୨।
ସାପୁଆ କେଳାଇ ଅକଲ ଗୁଡୁମ୍
ହୋଇଗଲା ସେଇଠାରେ
ଘଡାଈ ବଧାରେ ନିବେଦନ କରି
ଆଣିଲା ସର୍ପ ସକଳେ ।୩।
ଏହି ନୟାଗଡ଼େ ଜନ୍ମ ନେଇଥିଲେ
ଏପରି କରିତ କର୍ମା
ଧନ୍ୟ ନୟାଗଡ଼ ଧନ୍ୟତୋର ମାଟି
ନାହିଁ ସଂସାରେ ଉପମା ।୪।



# ଦେବାଦେବୀ କୀର୍ତ୍ତନା
(ସ୍ୱର-ରସକୁଲ୍ୟା)

ନବଦୁର୍ଗେ ଭଜେ ଦକ୍ଷିଣକାଳୀ
ଗୀତିକୋଳେ ଶୋଭା ଦେଉ ଉଜ୍ଜ୍ୱଳ
ଜଗତ ଜନନୀ ନାମସ୍ମରଣ
ମହାଘୋର ବିପଦରୁ ଉଦ୍ଧାରେ ଯେ
ମନୋବାଞ୍ଛା ପୂର୍ଣ୍ଣ ହୁଏ ଯେ
ଶୁଭ ଯାତ୍ରାରେ ନାମ ସୁମରିଲେ
ମନରେ ଡର ନଥାଏ ଯେ ।୧
ଘେନିଣ ଫୁଲ ତୁଳସୀ ସିନ୍ଦୂର
ଚଳନ୍ତି ଗୋପୀନାଥଙ୍କ ମନ୍ଦିର
ରାଧାକୃଷ୍ଣଙ୍କୁ କରନ୍ତି ଦରଶନ
ଜଗନ୍ନାଥ ମନ୍ଦିରକୁ ଗମନ ଯେ
ଦେଖି ଶ୍ରୀ ପ୍ରଭୁଙ୍କ ଶୋଭା ଯେ
ସିଂହାସନେ ଜଗନ୍ନାଥ ବଳଭଦ୍ର
ମଧ୍ୟରେ ସୁଭଦ୍ରା ଭଦ୍ରା ଯେ ।୨
ଲକ୍ଷ୍ମୀ ଦାନବଗଣୀ ବ୍ରାହ୍ମଣୀ ଦେବୀ
ଭକ୍ତ ଦେଖି ସରଗ ଶାନ୍ତ ଲଭି
ରଘୁନାଥଙ୍କୁ ଦର୍ଶନ କରନ୍ତି
ବେନି ପାର୍ଶ୍ୱରେ ସୀତା ସଉମିତ୍ରୀ ଯେ
ଉପମା ନାହିଁ ଜଗତେ ଯେ
ଶ୍ୟାମ ଦୁର୍ବାଦଳ କାନ୍ତି ମନୋହର
ଭୁଲ ନହୁଏ ପରତେ ଯେ ।୩

ଝାଧନ୍ମ ଦେବାଦେବୀ ଛତ୍ରମଣ୍ଡି
ଶିଦ୍ଧେଶ୍ୱରୀ ଶୂକଆ ରାମଚଣ୍ଡୀ
ତାର ତାରେଣୀ ଦେବୀ ଷିନାଥ ଠାକୁର
ରାମେଶ୍ୱର ମୂର୍ତ୍ତି ସପନେଶ୍ୱର ଯେ
କରି ନାନା ଦ୍ରବ୍ୟ ଭୋଗ ଯେ
ଆଳଖଣ୍ଡ ଢଣ୍ଢ କାହାଳୀ ହୁଳହୁଳି
ଲଭି ଅପୂର୍ବ ସୁଯୋଗ ଯେ ।୪
ଗୁଣ୍ଡିଚ୍ଛା ବାହୁଡ଼ା ଝୁଲଣ ଦୋଳ
ଗଣେଶ ଦୁର୍ଗା ସଭର୍ତୁଷ ମେଢ
ଗଜଲକ୍ଷ୍ମୀ ଶ୍ୟାମା କାଳୀଙ୍କ ପର୍ବ
ଭଜ ଓଷାପାଠ ମହା ଉତ୍ସବ ଯେ
ଚନ୍ଦ୍ରଶେଖର ଜୟନ୍ତୀ ଯେ
ଧନ୍ୟ ନବଦୁର୍ଗ ସୂତା ସୂତ ବର୍ଗ
ଭୂତବରଷ ପାଳନ୍ତି ଯେ ।୫



## ଦେବାଦେବୀ ଭୂମି ନୟାଗଡ଼

(ରାଗ ବଙ୍ଗଳାଶ୍ରୀ)

ଧନ୍ୟଧନ୍ୟ ନୟା — ଗଡ଼ ତୋ ମହିମା
ଧନ୍ୟ ତୋ ଶୋଭା ଗୃହଭୂମି
ଅଷ୍ଟସ୍ତ କରଣି — ପୁରାଣ ଘୋଷଇ
ଗାଉଛେ ଜଗତେ ପୁଣି ।୧

ଭଣ୍ଡାର ଶୃଙ୍ଗରେ — ଲତା ତନ୍ତୁ ତଳେ
ରୂପରେ ଶିବଥିଲେ
ଗାଈଠାରୁ କ୍ଷୀର — ଦାନକଲା ବେଳେ
ଲଣ୍ଡୁ ଗଉଡ଼ ଦେଖିଲେ ।୨

କ୍ରୋଧରେ ଜଗୁଇଁ — ପିଟିଲା ଚାହାଳେ
ଚମକ ତୋପାଦ ଚନ୍ଦ୍ର
ଧାଇଁଧାଇଁ ରକ୍ତ — ଝରି ଜପୁଚଲା
ରହିଛି ଏହା ପ୍ରମାଣ ।୩



ଗଣ୍ଡଶୁରେ ପୂର୍ତ୍ତି — ଲିଙ୍ଗ ବାହାରିଲେ
ଗୁପ୍ତେ ମାଳସାନ୍ତ୍ରି ଠାରେ
ଟୁଙ୍ଗା ଡାଙ୍ଗୁ ଡାଙ୍ଗୁ — ରୁଧିର ବୋହିଲା
ମ୍ଳେଚ୍ଛେ ଦେଖିଲେ ସେ କାଳେ ।୧

ଜଣ୍ଣ ଅଛି ଯେତେ — ପୋତା ଅଛି ସେତେ
ନିର୍ମାଣ କଲେ ଦେଉଳ
ସଦା ସର୍ବଦା — ପୂର୍ଣ୍ଣ ହୋଇଅଛି
ଶକ୍ତି ଉପରେ ଶଳୀଳ ।୨



ଶିଷ୍ୟ ମାନେ ଦୁଷ୍ଟ ଧରିଣ ଖଣ୍ଡେ
ଖୋଳୁଥିଲେ ପାଣିଅନ୍ତୁ
ବାହାରି ରୁଧିର ବହେ ଧାରଧାର
ଝଁଝଁଳ ପାଷାଣରୁ ।୧
ଝୁଣ୍ଡା ନାମରେ ଦୁଷ୍ଟକେଶ୍ୱରଙ୍କ
ନାମ ହୋଇଛି ପ୍ରବର
ଭକ୍ତଜନର ପ୍ରଭୁ ବର ଦେଉଛନ୍ତି
କଥାଅଛି କାଳକାଳ ।୨



ଗରିବ ବାଡ଼ରେ କଖାରୁ ଫଳିଲା
ପ୍ରଭୁଙ୍କୁ ଜାଚଙ୍ଗା ଥିଲା
ଆସି ଧନେ ଜଣେ ବନ୍ଧୁ ପଚାରିଲେ
ପଇସା ହାତେ ନଥିଲା ।
ଭାବିଲା ମନରେ କଖାରୁଟି ଚୋରି
କରିବାକୁ ତରକାରି
ଲଜ୍ଜାମୂଳେ ଯାଇ ଦେଖନ୍ତେ କଖାରୁ
ସର୍ପଛଟେ ଫୁ ଫୁ କରେ ।
ତ୍ରାହିଆଁ ହୋଇ ସେ ଘରକୁ ଆସିଲା
ବୁଦ୍ଧି ହୋଇଗଲା ବଣା
ବନ୍ଧୁଙ୍କୁ ଚାରମ୍ବ କପଟ କରିବ
ଏହା କେବଳ ଭ୍ରମନ ।
ହଠାତ୍ ଦେଖିଲା ସିନ୍ଧୁକ ପାଖରେ
ଜମା ହୋଇଛି ପଇସା
ପ୍ରଭୁଙ୍କ ମହିମା ରହିଛି ନଷ୍ଟସ୍ଥ
ଦୟାନାଥେ ମୋ ଭରସା ।



ମନ୍ଦିର ଚୂଡ଼ାରେ କଳସ ଉପରେ
ସୁବର୍ଣ୍ଣ ଚକ୍ରକୁ ଦେଖି
ରଘୁନାଥ ଜୀଉ ଙ୍କର ପୂଜାପଣ୍ଡା
ଗୁପଚେ ନେଲ୍ ଫିଟେଇ ।
ମନ୍ଦିର ଉପରେ ଦୃଷ୍ଟି ପଡ଼ିବାରୁ
ଝୁଲିଲା ଧ୍ୱଜ ଚଟଡ଼
ସନ୍ଦେହ କରିଣ ଅନେକ ବ୍ୟକ୍ତିଙ୍କୁ
ଦିଆଗଲା ଗାଳି ମାଡ଼ ।
ଧ୍ୱଜ ପଡ଼ିଯିବା ଭୟରେ ସେବକ
ଦେଲେ ଅନ୍ୟକୁ ବଢ଼ାଇ
ଖଡଗାଡ଼ ମଧ୍ୟେ ଲୁଚିଗଲା ଚକ୍ର
ଜନ ଦୃଷ୍ଟିକୁ ଏଡ଼ାଇ ।
ସ୍ୱୟଂ ରଘୁନାଥେ ସ୍ୱପ୍ନେ ଜଣାଇଲେ
ଦୋଷୀ ମାନଙ୍କର ନାମ
ପାତାଳ ମଧ୍ୟରୁ ପାଚେରି ବାହାରେ
ରୋଧିବାକୁ ଅକ୍ଷମ ।



କେଉଁଠାରୁ ଏକ ବାବାଜୀ ଆସିଣ
ଓଡ଼ିଗ୍ରାମେ ପହଞ୍ଚିଲେ
ଶ୍ରୀ ରଘୁନାଥଙ୍କୁ ଦର୍ଶନ କରିବେ
ଏକଥା ମନେ ବାଞ୍ଛିଲେ ।୧

॥ ୩୩ ॥

ପେଟ ବ୍ୟଥା ବେଗେ   ସଦା ଛଟପଟ
ହେଉଥିଲେ ସେହି ଯୋଗୀ
କପର ବ୍ୟାଧିରୁ   ମୁକତ ଲଭିବେ
ଚିନ୍ତୁଥିଲେ ଭାବଭବ ।୨
ରାମଭକ୍ତ ଜଣେ   ଉପଦେଶ ଦେଲେ
ଭକ୍ତରଖ ରଘୁନାଥେ
ସେହି ଦୟାମୟ   ହୋଇଲେ ସହାୟ
ବ୍ୟାଧି ଖଣ୍ଡିବେ ତୁରତେ ।୩
ଯୋଗୀ ମହାଶୟ   ସ୍ନାନ ପୂଜକରି
ନତ ମନ୍ଦିରକୁ ଗଲେ
ଅଳପ ଦିନରେ   ତାଙ୍କ ଚିର ବ୍ୟାଧି
ଶ୍ରୀ ରଘୁନାଥ ଖଣ୍ଡିଲେ ।୪
ରଘୁନାଥଙ୍କର   ମହିମାକୁ ଦେଖି
ଯୋଗୀ ହୋଇଗଲେ ଖୁସି
ମନସ୍ଥ କରିଲେ   ପାଠକନା କୋଠ
ପ୍ରଭୁଙ୍କୁ ଦେବ ଝଟତି ।୫
ଯୋଗୀ ମହାଶୟ   ସୁଦୂର ବମ୍ବେକୁ
ତତ୍‌କ୍ଷଣେ ଚଳିଗଲେ
ଠାକୁରଙ୍କ ପାଇଁ   କୋଠ ବନାଇବେ
ଏହିକଥା ଚିନ୍ତାକଲେ ।୬
ଗଭୀର ନିଦ୍ରାରେ   ଶେଷ ପ୍ରହରରେ
ଦେଖିଲେ ଆଶ୍ଚର୍ଯ୍ୟ ସ୍ୱପ୍ନ
ନିଜେ ରଘୁନାଥ   ମାପ କହିଦେଲେ
ଯୋଗୀ ବଢ଼ାଇଲେ କାମ ।୭

ପାଠଶାଳା କୋଠ ଅଦ୍ୟାବଧି ଅଛି
ମଢରେ ଦ୍ୱାର ସାଇତା
ବନ ବୃଳଯାଉ ଚିହ୍ନ ରହିଅଛି
ସବୁକାଳ ପାଇଁ କଥା ।୮



(ରାଗ-ରସକୁଲ୍ୟା)

ଭୋଗ ପାଇଁକ କଦଳୀ ନଥିଲା
ଝଡ଼ ତୋଫାନେ ନଷ୍ଟ ବଡ଼ିଥିଲା
ଚେନା ଚୂଡ଼ାଘସା କଦଳୀ ଭୋଗ
ଠାକୁରଙ୍କ ପାଖେ ହୁଅଇ ଆଗ ସେ
ପଡ଼ିଲା ଘୋର ଭାବେଣୀ ଯେ
ଯେବେ ନମିଳିବ ଆଜି ବନ୍ଦହେବ
ଜାଣନ୍ତି ସେ ଯଦୁମଣି ଯେ ।୧
ପଣ୍ଡା ପଡିଆରୀ ବ୍ୟାକୁଳ ଜାଣି
ବୁଝିଗଲେ ପ୍ରଭୁ ଶ୍ରୀ ଯଦୁମଣି
ଚଷା ବେଶେ ନଷ୍ଟ କୂଳକୁ ଗଲେ
ଭକ୍ତ ହସ୍ତରେ କଦଳୀ ଆଣିଲେ ସେ
ମାସ୍ତ୍ରାକଲେ ଯଦୁମଣି ଯେ
ନିମିଷକ ମଧ୍ୟେ ପାଣି ଛାଡ଼ିଗଲା
ଭୋଗହେଲା ମନଜାଣି ଯେ ।୨



# ରାମ ଲକ୍ଷ୍ମଣଙ୍କ ଡାଳଖିଆ

(ବଗ-ଉସକୁଲ୍ଲା)

ଘମୁଅର ଘାଟବର ଭକ୍ତିରେ
ଗୁହାଡିଆ ଚଢ଼ିଥିଲା ମନ୍ଦିରେ
ଏଜ୍ଞାନ ହୋଇ ବାଢ୍ୟ ନସ୍ତୁରଇ
ପାଟେଣ ଦୁଇଜଣ ଡାକ ଛକାଇ ଯେ
କହିଲୁ କଏସେ ଭୁଟମ ଯେ
କାହିଁକି ଡାକୁଛ ଅର୍ଦ୍ଧ ରଜନୀରେ
ଆସିଅଛ କେଉଁ କାମେ ଯେ ।୧
ଇଛାହୁଏ ଜଳା ହାଣ୍ଡିଆ ଡାଳ
ଛଣ୍ଡୁଥିବ ନାଲି ନାଲି କେବଳ
ଯାଦେ ଚାଲିବାକୁ ନାହିଁ ମୋ ବଳ
ବେଗେ ପଡ଼ିଅଛି ଅଙ୍ଗଦୁର୍ବଳ ଯେ
ଫୁଙ୍କି ଦେଲେ ଯିବ ଉଡ଼ି ଯେ
କୁଟା ଖିଅକର ବଳନାହିଁ ମୋର
ଗଲେ ଯିବ ପ୍ରାଣ ଛୁଟି ଯେ ।୨
ଯେଉଁଷଣି ସୁସ୍ଥ ସବଳ ହୋଇଲା
କେମନଭାଇ ସଙ୍ଗେ ସଙ୍ଗେ ଚାଲିଲା
ବୈକୁଣ୍ଠ ପୁର ଥିବା ଡାଳବୃକ୍ଷ
ଆସ୍ତେ ଆସ୍ତେ ଲଭିଗଲା ପ୍ରତ୍ୟକ୍ଷ ଯେ
ସ୍ୱୟଂପ୍ରଭୁ ବିଜେ ରାମ ଯେ
ଦେଖି ଭବ୍ୟଶୋଭା ମନହେଲା ଲୋଭ
ଦୁର୍ବାଦଳ ଘନଶ୍ୟାମ ଯେ ।୩

ଆନନ୍ଦରେ ହାଣିଦେଲା ତାଳ
ସରଧାରେ ପ୍ରଭୁ କଲେ ଆହାର
ଆଶ୍ଚର୍ଯ୍ୟ ହୋଇ ଦେଖିଲ୍ ହାତହାଣି
ଝଟକ ନଟେକ ରାମ ଲକ୍ଷ୍ମଣ ବେନି ଯେ
ରକ୍ତସ୍ରୋତ ଯାଏ ବକ୍ଷ ଯେ
କଣ୍ଠାଗ୍ରତ ଚିହ୍ନ ନାହିଁ ହସ୍ତେ ତାର
ଝଟକେକଲେ ଦୁଇ ଭାଇ ଯେ ।୪
ଗ୍ରାମ ଚହଳ ଚହଳ ହେଉଇ
ରେଗିଆ ଭକ୍ତ ସୁସ୍ଥେ ବଞ୍ଚଇ
ଦୁଃଖକଷ୍ଟ ଘୋର ବେଦନା ତାର
ପ୍ରଭୁଙ୍କ କୃପାରୁ ହୋଇଲା ଦୂର ଯେ
ପ୍ରତିବର୍ଷେ ଭୋଗ ଖାଳ ଯେ
ଧନ୍ୟତାର ମଥା ଲେଖିଅଛି କଥା
ରହିଅଛି କାଳ କାଳ ଯେ ।୫



# ମୃତ ଲୋକକୁ ଜୀବଦାନ

(ରାଗ-ରସକୁଲ୍ୟା)

ବଡ଼ ଖେମଣ୍ଡି ପାଖପୁର ଗ୍ରାମ
ତ୍ରିବିକ୍ରମ ମିଶ୍ର ତାଙ୍କର ନାମ
ପୁତ୍ରର ନାମ ଅଟେ ମହେଶ୍ୱର
ହୋଇଥିଲେ ସେ ଅତି ଅଳିଅଳ ଯେ
ପିତା କରନ୍ତି ଭାବନା ଯେ
ଭବିଷ୍ୟ ନିର୍ଣ୍ଣୟ କରନ୍ତି ତାହାର
କରିଣ କୋଷ୍ଠି ସାଧନା ଯେ ।୧
ତ୍ରିବିକ୍ରମ ଥିଲେ ମହା ପଣ୍ଡିତ
କୋଷ୍ଠି ସାଧନାରେ ହୋଇଲେ ରତ
ପୁତ୍ରକୁ ସତର ହେଲେ ପ୍ରବେଶ
ତ୍ରିବିକ୍ରମ କରିବେ ଦୁର୍ଗବାସ ଯେ
ଅଣିଶି ପ୍ରବେଶ ମାତ୍ର ଯେ
ଶିବରାତ୍ର ଦିନ ସେ ମୃତ୍ୟୁ ଲଭିବ
ବଂଶ ହୋଇବ ବିଲୁପ୍ତ ଯେ ।୨
ହୋଇବ ଯେବେ ପୁତ୍ର ମୃତ ବନ୍ଧ
ତେବେ ବୋହୂ ହେବ ନିଶ୍ଚେ ବିଧବା
ପିତା ମାତା ଦୁଃଖେ ମୁଣ୍ଡ ପିଟିଲେ
ଜପତ ଚନ୍ଦନା ବୋଲି କାନ୍ଦିଲେ ସେ
କୋହାଳଟେ ଘନ ଘନ ଯେ
କେବେ ଏହିକଥା ନୋହିବ ଅନ୍ୟଥା
ଶାସ୍ତ୍ରେ ରହିଛି ପ୍ରମାଣ ଯେ ।୩

କମ୍ପିବ କଲେ କ ପ୍ରତିକାର
ଚଣ୍ଡଙ୍ଗ ଲାଗଇ ଅନ୍ଧକାର
ପ୍ରତାପ ପୁର ଭୁବନେଶ୍ୱର ଦେବେ
ସେବା କଲେ ନିଷ୍ଠପୂ ଉଦ୍ଧାରିବେ ସେ
ଶାଙ୍କଣ ପଣି ଦସ୍ତୁର ଯେ
ସ୍ୱପ୍ନରେ ପ୍ରଭୁଙ୍କ ହୁକୁମ ହୋଇଲା
ଲଣ୍ଡୁବାବା ହେବେ ବର ଯେ ।୪

ପ୍ରଭୁଙ୍କ ଆଜ୍ଞାରେ ଆସିଲା ଫେରି
ବାବାଙ୍କ ମଧ୍ୟରେ ଦଣ୍ଡ ଗୁହାରି
ଯମଦୂତ ଗଣେ ପ୍ରବେଶ କଲେ
ଗଳାରେ କାଳଫାଶକୁ ବାନ୍ଧିଲେ ସେ
ଏ ସମସ୍ତେ ଲଣ୍ଡୁକେଶ ଯେ
ତ୍ରିଶୂଳ ଦେଖାଇ ତଡ଼ିଲେ ମନ୍ଦିରୁ
ଧମକ ବାବାଙ୍କ ବେଢ଼ିଣ ଯେ ।୫

ଶ୍ୟାମଳ ତନୁ ରକ୍ତ ବସ୍ତ୍ରଧାରୀ
ବିଶାଳ ବପୁ ପାଶାଙ୍କୁଶ ଧରି
ଲଣ୍ଡୁବାବା ସଙ୍ଗ ହେବେ ମିଳନ
ନିନ୍ଦା ହୋଇବ ମତେ ତ୍ରିଭୁବନ ଯେ
ଆଜିକା ଶୁଭ ଦିବସ ଯେ
ଲକ୍ଷ ଲକ୍ଷ ଦୀପ ଜାଳି ମୋର ଭକ୍ତ
ହୋଇବେ ଅନ୍ତ ନିର୍ବଂଶ ଯେ ।୬

ମହେଶ୍ୱର ସ୍ୱପ୍ନେ ଉଠି ବସିଲ
ସେ ଦିବ୍ୟ ପୁରୁଷ ଦର୍ଶନ କଲ
ଛପିଣ କହିଲେ ମହାପୁରୁଷ
ଦୁଃଖ ଆଜିଠାରୁ ହୋଇଲା ଶେଷ ଯେ
ଆୟୁତୋର ବୃଦ୍ଧି ହେଲା ଯେ
ଭଣିଷରୁ ଏକ ଦଶକୁ କାଟିଣ
ଅନ୍ତେ ଶୂନ ଯୋଗ ହେଲା ଯେ ।୭

ମହେଶ୍ୱରଙ୍କର ଜ୍ଞାନ ଆସିଲା
ପୂର୍ବକଥା ସବୁ ମନେ ପଡ଼ିଲା
ସପନେ ଦେଖିଲା ଦିବ୍ୟ ପୁରୁଷ
ଜୀବଦାନ ଦେଲା ନବେ ବରଷ ଯେ
ଅସମ୍ଭବକୁ ସମ୍ଭବ ଯେ
ଧନ୍ୟ ଲଡୁବାବା ଧନ୍ୟ ତୁମ କୀର୍ତ୍ତି
ତୁମେ ହିଁ ମହାନୁଭବ ଯେ ।୮

ଶୁଣି ସଭାର ସେହି ଘଟଣାକୁ
ବିଶ୍ୱାସ କଲେନି ନିଜ କର୍ଣ୍ଣକୁ
ଘଟଣା ସ୍ଥଳକୁ କଲେ ଗମନ
ଅନୁସନ୍ଧାନରେ ଲଗିଲା ମନ ସେ
ଘଟଣାଟି ଥିଲା ସତ ଯେ
ନାସ୍ତିକ ମନରେ ଯାଗିଲା ଭକତି
ଶୁଣିଏ ଏ ବିଚିତ୍ର ତଥ୍ୟ ଯେ ।୯

ଶରଣ ପଶି କେତେ ଗୁହାଶଙ୍କ
ଲକ୍ଷଲକ୍ଷ ଭକ୍ତ ଲଭି ସୁଦକ୍ଷ
ହସିଉଠେ ତୁମ ସୁନା ସଂସାର
ମନୋବାଞ୍ଛା ପୂର୍ଣ୍ଣ କରି ସକଳ ଯେ
ବାବାଙ୍କ କରୁଣା ବଳେ ଯେ
ଗଲା ଜଞ୍ଜାଳ କାଟି ଲଭନ୍ତି ମୁକତି
ତୁମରି ମହିମା ବଳେ ଯେ ।



## ଅବଦୁଲ୍ ସତ୍ତାର ଖାଁ
(ଶାସନ ପ୍ରତିନିଧି)

ଅବଦୁଲ୍ ସତାର ଅଟି ନସ୍ୱାଗଡ଼
ଷଡ଼ଗଳ୍ପ ହାହାକାର
ଦେଖି ମହାବଳ ହେଲେ ଆତ୍ରଗ୍ରସ୍ତ
ପ୍ରଜାମାନେ ଅନ୍ଧାର ।୧
ସେ, କଡ଼ା ପ୍ରକୃତି ଚଳାଇଲେ ନୀତି
ହୁକୁମ ଜାରି ଅପାର
ବାବାଙ୍କ ମଧ୍ୟରେ ପଶିନ ପାରିଲ
ଦେଖି ସର୍ପ ଫୁଁ ଫୁଁ କାର ।୨

ଭୟ ଉପଦ୍ରବେ　　ଥରିଲେ ସମସ୍ତେ
ନଯାନ୍ତି ସାକ୍ଷାତ ପାଇଁ
ପ୍ରତି ଗ୍ରାମପାଇଁ　　ରାସ୍ତା ବିଦ୍ୟାଳୟ
ଖୋଲିଦେଲେ ଶିକ୍ଷା ପାଇଁ ।୩

ଲାଞ୍ଚ, ମିଛ, ଠେଙ୍ଗା　　ଦେଲେ ବନ୍ଦକରି
ଚଳାଇ ହୁକୁମ ଜାରି
ଆଇନ ଅମାନ୍ୟ　　କଲେ କାରାଦଣ୍ଡ
ରାଇଜରୁ ହେବ ପାରି ।୪

ଅବଦୁଲ୍ ସତାର　　ବଡ ହୁସିଆର
କଲେ କୁସଂସ୍କାର ଦୂର
ନରବଳୀ ପ୍ରଥା　　ସ୍ଥଗିତ କରାଇ
ଖଣ୍ଡିଲେ ଦୁଃଖ ସନ୍ତାପ ।୫

ଗମନା ଗମନ　　ସୁବିଧା ନିମନ୍ତେ
ନିର୍ମାଣିଲେ କେତେ ରାସ୍ତା
ରାସ୍ତା ଦୁଇ ପାର୍ଶ୍ୱେ　　ଲଗାଇଲେ ବୃକ୍ଷ
ଛୁଟିଗଲା ଦୁରବସ୍ଥା ।୬

ଅବଦୁଲ୍ ଗାଫର　　ଆଇନରେ ଖୋର
ଥିଲେ ମୁଖ୍ୟ ଅଫିସର
ବାର ବରଷର　　ଦଖଲ ଯାହାର
ତା, ନାମେ କଲେ ରେକର୍ଡ଼ ।୭

ଜମିଦାର ଜମି　　ମାପଚୂପ କରି
ବିତରଣ କଲେ ପଠା
ଗରିବେ ପାଇଲେ　　ଭୂସମ୍ପତ୍ତି କେତେ
ଦୂର ହୋଇଗଲା ଚିନ୍ତା ।୮

ପ୍ରତି ଗ୍ରାମ ପାଇଁ　　ଦୁଇ ତିନି ଜଣ
ଥିଲେ ସରବରାକାର
ମଣ୍ଡଳାଭେ ଜଣେ　　ମକଦ୍ଦମ ବୃତ୍ତି
ଅସୁଲ କଲେ ଭୂକର ।୯
ନିରକ୍ଷର ତାର　　ଦୁରୀକରଣରେ
ମଜ୍ଜିଲେ ଖାଁ ସାହେବ
ଚଉଦଟେ ଖୋଲି　　ଶିକ୍ଷା, ସ୍ୱାସ୍ଥ୍ୟକେନ୍ଦ୍ର
ହେଲେ ପ୍ରଗତି ସମ୍ଭବ ।୧୦
ସାଗର ସୁନ୍ଦର　　ପ୍ରଭୁ ଲଡୁବାବା
ଜଣକେ ପାରିଲେ ନାହିଁ
ବ୍ରାହ୍ମଣ ମାନଙ୍କୁ　　ବେଠିରେ ଖଟାଇ
ଦେଖାଇ ଦେଲେ ବଣ୍ଡାଇ ।୧୧
ପ୍ରଜା ବେଠି ଖଟି　　ହେଲେ ନାରଖାର
ପଡିଗଲା ହଲହଲ
ଇଷ୍ଟ ବାଙ୍ଗରଣୀ　　ପଦାଘାତ କରି
ଗରବେ ଉଠିଲେ ଫୁଲି ।୧୨
ଉଜାଗର ରହି　　ପହରା ଦେବାକୁ
ରଖିଲେ ଚଉକି ଦାର
ବହଟରେ ବିଶ୍ରାମ　　ପାଇଁ କର୍ମଗୁଷ୍ଟି
ଗଢିଥିଲେ କୋଠଘର ।୧୩
କର୍ମଗୁଷ୍ଟି ମାନେ　　ରହିବା ପାଇଁକି
ଛୋଡଦେଲେ ବାହଙ୍ଗର
ଖାନକ ସାଇକ　　ଉଠାଇ ଦେଇଣ
କଲେସେ ବଜାର ଘର ।୧୪

ନୟାଗଡ଼ ମଧ୍ୟେ ଜୁଲୁମ ଦେଖାଇ
କଲେ ନିଶା ନିବାରଣ
ମଦ୍ୟପ, ଗଞ୍ଜେଇ, ଅଫୁ ଗୁଳିଖିଆ
ଉପେକ୍ଷିଲେ କର୍ମମାନ ।୧୫

ମାଳ ଅଞ୍ଚଳକୁ ବ୍ୟବସାୟୀ ମାନେ
କେହି ନପାରିବେ ଯାଇ
ସତାର ଖାଁଙ୍କ ଆଦେଶ ହୋଇଲା
ଶୁଣିଥାଅ ଦେଶଭାଇ ।୧୬

ଆଦିବାସୀ ହରି- ଜନଙ୍କ ସଙ୍ଗରେ
ବ୍ୟବସାୟ ନକରିବ
ଠକାଠକି କରି କରଜ ଲଗାଇ
ଅଧିକ ସୁଧ ନନେବ ।୧୭

ବାଧ୍ୟତା ମୂଳକ ଶିକ୍ଷାଦାନ କଥା
ବିଦ୍ୟାଳୟେ ପ୍ରଚଳିତ
ନଗଲେ ପିଲାଏ ଜୋରିମାନା ଦେଇ
ପାଇଯାଆନ୍ତି ମୁକତ ।୧୮

ଅବଦୁଲ ସତାର ଥିଲେ ଆଜ୍ଞାସୁର
ଲବଣ ପ୍ରାପ୍ତ ବଢାଇ
ପ୍ରଜାମାନେ ଭଣ ଥିବ କର୍ମନିଷ୍ଠ
ଥିଲେ ସେ ପାଦେ ଖଟାଇ ।୧୯

ଅନାବାଦି ଜମି ଚନାଲୁ ମଝିରେ
ଦଖଲ କରିଲେ ପ୍ରଜା
ଆଇନାନୁଯାୟୀ ଯୋରିମାନା ଦେଇ
ହେବ କାରାଦଣ୍ଡ ସଜା ।୨୦

ହାଟରେ ହାଟୁଆ ଗୃହଘର କଲେ
ହାଟେ, ଘାଟେ ବେଦଖଲ
ଯେ ଗ୍ରାମେ ନଥିବ ଟୋଚର ଚଡ଼ିଆ
ଘୁଞ୍ଚ ହୋଇବ ଜଙ୍ଗଲ ।୨୧

ସରକାରି ଯାଗା ବୃକ୍ଷମାନ ଥିଲେ
ରକ୍ଷା ରକ୍ଷଣ କରିବ
ବୃକ୍ଷସ୍ଥାନ ଜାଗା ନୂତନ ରୋପଣ
କରି ଫଳକୁ ଭୋଗିବ ।୨୨

ରକ୍ଷଣ ବେକ୍ଷଣ କଲେ ବୃକ୍ଷମାନ
ବିନା ଫିସ୍ ବ୍ୟବହାର
ବନ୍ଧ, ପୁଷ୍କରଣୀ ମଡାଇଲେ ପାଣି
ଧାର୍ଯ୍ୟହେବ ଜଳକର ।୨୩

ପୁଷ୍କରିଣୀ ମାନ ପଙ୍କ ଉଦ୍ଧାରଣ
ମରାମତ କରାଇବ
ସରକାରୀ ସ୍ଥାନେ ଜଳକର୍ତ୍ତୀ କଲେ
ନାମ ଦରଜ ରହିବ ।୨୪

ନଦୀବନ୍ଧ ନାଳ ପାଣିନେଲେ କର
ଅଫିସ ଆଦେଶ ଆଣି
ନଦୀ ବନ୍ଧ କଲେ ଅନୁମତି ଆଣି
ଗତି ଦେଲେ ସେ ଆଇନ ।୨୫

ରାସ୍ତା ବିଦ୍ୟାଳୟ ଧନା ମଜୁରୀରେ
ମରାମତି କରାଇବେ
ବନ ପୋଡ଼ିଗଲେ ନିଆ ଲଗାଇଣ
ପ୍ରଜା ବେଠିରେ ଖଟିବେ ।୨୬

ଅବଦୁଲ ସତାର ମୁଖ୍ୟ ଅଫିସର
ସେଗୁଣ କଏ ବର୍ଣ୍ଣିବ
ଯାହା ଗତି ଯାଇ ଛନ୍ତି ସେ ଆଇନେ
ତାଙ୍କ ସମ କିଏ ହେବ ।୨୭
ଦ୍ୱିଜଙ୍କ ବନ୍ଧୁଛେ ଫାଇଲ ସଜାଡ଼ି
ସତାର ହେଲେ ଚଞ୍ଚଳ
ସମ୍ବଲପୁରରେ ଏଜେଣ୍ଟଙ୍କୁ ଭେଟି
ନଷ୍ଟ କରିବେ କଠୋର ।୨୮
ଏହି ସମୟରେ ଆକସ୍ମିକ ଭାବେ
ଚେତନା ଶୂନ୍ୟ ହୋଇଲେ
ଅକାଳ ଚଡ଼କ ସତେକି ପଡ଼ିଲା
ଉତ୍କଳା! ସାଙ୍ଗ ଭଲେ ।୨୯



## ମାତୃମୁକ୍ତିର ପଥିକ

ବନ୍ତବଡ଼ କର୍ମେ ପ୍ରସ୍ତୁତ ହୋଇଲେ
ଶତକିଶଂ ମସିହାରେ
ନାରଣ ନନ୍ଦ ନ- ରବିନ୍ଦ୍ର ଶାରଙ୍ଗ
ଭାଷଣ ଦେଲେ ସଭାରେ ।୧
ଚରଣ ବେହେରା ଜଦ୍ୟନାଥ ମୁର୍ତ୍ତି
ବାଞ୍ଛାନିଧି ସେନାପତି
ଶୁକ୍ରା ବେହେରା ସୁଦର୍ଶନ ମୁର୍ତ୍ତି
କୁବେର ସାହୁ ଅଚ୍ୟୁତ ।୨

ଶ୍ରୀଧର ଦାସ ଲ- କ୍ଷ୍ମଣ ମହାରଣା
ବେଶଲଗି ଧାଇଁ ଧାଇଁ
ଲଢିଲଢି ଦେଶ ଲଗି ପ୍ରାଣଦାନ
ଭାରତ ସ୍ୱାଧୀନ ପାଇଁ ।୩

ସ୍ଥାନେ ସ୍ଥାନେ ସଭା ସମିତି କରଣ
ରଖିଲେ ଦେଶର ଟେକ
ସରକାରୀ ଦାଉ ସବୁସହି ନିତ
ନାକି ଚଗଡ଼ ଧମକ ।୪

କେତେ ଲାଠିମାଡ଼ କରି ଟଣ୍ଡଗୋଳ
ଗାଳି ଅପମାନ ସହି
ନାଲିପଗା ଦଣ୍ଡ କେତେଛନ୍ଦ ସହି
ହାଜତ ଭିତରେ ରହି ।୫

ଜନମ ମାଟିର ମାନ ରକ୍ଷା ପାଇଁ
ଜନମି ଥିଲେ ସନ୍ତାନ
ଆନନ୍ଦ ମଲ୍ଲିକ ନାରଣ ମଲ୍ଲିକ
ଦେଶପାଇଁ କଲେ ରଣ ।୬

ମଧୁର ମଲ୍ଲିକ କର୍ଣ୍ଣି ଡାକୁଆ ଯେ
ନଳୀ ମୁଖେ ଦେଲେ ପ୍ରାଣ
ଲଢ଼ିଲଢ଼ି ଦେଶ ପାଇଁ ପ୍ରାଣଦେଲେ
ବଢ଼ାଇ ଦେଶର ମାନ ।୭

ଜନ୍ତ୍ରୁରି ପରିଡ଼ା ବୁଢ଼ିଆ ପରିଡ଼ା
କାରାଦଣ୍ଡକୁ ଭୋଗିଲେ
ଦସ୍ମା ବେହେରା ଲିଙ୍ଗା ନାୟକର
ଜୀବନ ଗଲା ଜେଲରେ ।୮

## ଶ୍ରେଷ୍ଠ କିଏ

ଧନ୍ୟ ନୟାଗଡ଼ ଛୁଅନ୍ତୁ ମହାନ୍
ସର୍ବଗୁଣେ ପରିପୂର୍ଣ୍ଣ
ସ୍ୱୟଂ ସୀତାରାମ ଭଜେ କରିଥିଲେ
ଭବେ କେ ହେବ ସମାନ ।୧

ନୟାଗଡ଼ ମାଟି ସୁବର୍ଣ୍ଣ ସମ୍ପତ୍ତି
ଧନବଳ ଜନବଳ
ସିଂହ କୁଆ ସଙ୍ଗେ ସମସ୍ତ କୌଶଳେ
ଗଧକବା ଦେବ ଭୁଲ ।୨

ଶାଳ, ପିଆଶାଳ ଶିଶୁ, ସାଗୁଆନ
ଏସବୁ ବୃକ୍ଷ ମୂଲ୍ୟବାନ
ଶିଙ୍ଖଣ, ଗମ୍ଭାଡ କୁସୁମ, ବାନ୍ଧଣ
ଦେଶର ଅମୂଲ୍ୟ ଧନ ।୩

ହରିଡ଼ା, ବାହାଡ଼ା ଅଁଳା, ଦଶମୂଳ
ଔଷଧ ବ୍ୟବହାର
ଶାଳପତ୍ର ଖଲି କେନ୍ଦୁପତ୍ର ବିଡ଼ି
ଶିଳ୍ପ ଅଟଇ ପ୍ରସାର ।୪

ବନଜାତ ଦ୍ରବ୍ୟ ଅତୁଳ ସମ୍ପଦ
ସରକାରଙ୍କ ସମ୍ପତ୍ତି
ଖଟ, ସୋଫାସେଟ ଦିଶେ ଝକମକ
ସୁନ୍ଦର ଦିଶଇ ଅତି ।୫

ଜଗତେ କେ ଅଛି କାଠ ବାଉଁଶରେ
ନିର୍ମାଣ ନକରି ଘର
ଜଙ୍ଗଲ ସମ୍ପଦ ସଭିଙ୍କର ଦାବୀ
ଶାନ୍ତ ଗଉରବ ଆମରି ।୬

କେନ୍ଦୁ ଟୋଲ ଚୂଆ          ଝୁଣାରୁ ଆଦାୟ
ମହୁଲକୁ ଭରକଣ
ଦୁଃଖି, ରଙ୍କି, ଶୋଷି          ଭୁଞ୍ଜି ପେଟପୋଷେ
କାଠଭର ମୁଣ୍ଡେ ଧରି ।୭
ଆଖ୍ ଚନ ସାର          ଜଗତେ କେବଳ
ନକଲେଟି ବ୍ୟବହାର
ଶୃହାଖିଆ ମୁହଁ          ପଡ଼ଇ ଝାଞ୍ଜଁଳ
ହଂସା ଉଡ଼ିଯାଏ ତାର ।୭
ଖେଳ କାର୍ଯ୍ୟ ମାନେ          ନଚଡ଼ିଲେ ମିଠା
ସେତକ ନହୁଏ ଜାଣ
ନନ୍ଦା ଅପବାଦ          ପାଇଁ ଅପମାନ
ଗାଳିଶୁଣି ଯାଏ ଦିନ ।୯
ନୟାଗଡ଼ କବି          ଲେଖା ସୁଭୂର୍ଯ୍ୟରେ
ସମକେ ହୋଇବ ଭୁଲ
ଭଞ୍ଜ ଯଦୁମଣି          ସମକେ ଦେବଟରେ
ଲେଖା ମନମୁଗ୍ଧକର ।୧୦
ନୟାଗଡ଼ ପଣ          ନଥିବେ ଏଭଳି
ହଟିଛନ୍ତି କେତେ ଖାଁର
ରଖି ଯାଇଛନ୍ତି          କୀରତି କାହାଣୀ
କାହ୍ନିଁକ କାହାକୁ ଡ଼ର ।୧୧
ଧନ୍ୟ ନୟାଗଡ଼          କବି କଳାକାର
ପାଇଛନ୍ତି ଉଚ ସ୍ଥାନ
କାହାରିକୁ ମଥା          ନୁଆଇ ନାହିଁରେ
ପାଏ ପୂଜା ସନମାନ ।୧୨

ଏହି ରାଜ୍ୟ ଗୃହୁ ଚନ୍ଦ୍ରକଳା ଶୋଭା
ଦେଶରେ ରହିଛି ଟେକ
କେଉଁ ଗୁଣଗଣେ ହେବକେ ସମାନ
ଦେଖାଉ ଅଛ ଚହଳ ।୧୩
ହସି ଉଠୁଅଛି ନୟାଗଡ଼ ଭୂଇଁ
ଗରବେ ପଡ଼େ ଉଛୁଳ
ନୟାଗଡ଼ ଧାମେ ଚଉଦିଗ ବାସେ
କେ ହେବକ ସମତୁଲ ।୧୪
ଦନ୍ତାହସ୍ତୀ କୁଆ ଜାଣଇ ଦୁନିଆ
ସରିକ ହେବ ଶୃଗାଳ
ଧର୍ମ, ମାନ, କ୍ଷମା ଗୁଣୀରତ୍ନ ପୂର୍ଣ୍ଣ
ନୟାଗଡ଼ ପ୍ରଜାକୁଳ ।୧୫
କେତେ ଦେବାଦେବୀ ବିଜେ ପୁଣ୍ୟସ୍ଥଳୀ
ଉମା ଲଡୁକେଶ ଦେବ
ଧନ୍ୟ ନୟାଗଡ଼ ରଘୁନାଥ ବିଜେ
ଭସ୍ମ କମ୍ପାଇଁ କରିବ ।୧୬
ଏହି ନୟାଗଡ଼ ସବୁରୁ ସୁନ୍ଦର
ଆହ୍ଲାଦ ପବନ ମୟ
ଶ୍ରୀକୃଷ୍ଣଙ୍କ ସଙ୍ଗେ ଜାମ୍ବୁବତୀଙ୍କର
ହୋଇଥିଲା ପରିଣୟ ।୧୭
ବାଉଶି କାଉଁଶି ଗୋପିନାଥ ଦେବ
ବିଜେ ମା ଦକ୍ଷିଣକାଳୀ
ନବଦୁର୍ଗା ଧାମେ ବିଜେ ହୋଇଛନ୍ତି
ଗରବେ ପଡ଼େ ଉଛୁଳ ।୧୮

## ନୟାଗଡ଼ପାଇଁ ପ୍ରତିଷ୍ଠିତ ବ୍ୟକ୍ତିଙ୍କର ଅବଦାନ

ସତ୍ୟପଥେ ରହି ଅବିରତ ମତି
ନାମ ଭୂମ ସତ୍ୟବାଦୀ
ସାହିତ୍ୟ ସାଧନେ ଉତ୍ସର୍ଗି ମାହାତ୍ମ୍ୟ
କରିଅଛି ଅନୁରାଗି ।୧

ଯେତେ ଧନ ମୋର ସାଧନା ପଥରେ
ଲେଖଣୀ ଗୁଳ୍କୁ ବଢ଼ିବ
ମୋ ଅନ୍ତରେ ନିତ୍ୟ ତବ ହାର୍ଦ୍ଦିକତା
ଚିର ଉଦ୍ଭାସିତ ହେବ ।

ଶ୍ରୀଯୁକ୍ତ ଯଜ୍ଞଦ୍ର ଖୁଣ୍ଟିଆ ତୋଳାଇ
ମହିଳା କଲେଜ ହର୍ମ୍ୟ
ମଦନ ଜନ୍ମଷ ଉଧାନେ ମଣ୍ଡିଣ
କଲେ ନାନା ଶୁଭକର୍ମ ।୩

ସୁରେନ୍ଦ୍ରନାଥ ଓଡ଼ିଶା ସାହିତ୍ୟ
ଏକାଡେମୀ ଦୀପଶିଖା
ଦୁଃସ୍ଥ ଲେଖକଙ୍କ ହୃଦ ଚିହ୍ନିବାକୁ
ଧାଡା ଦେଇଅଛୁ ଏକା ।୪

ଓଡ଼ିଆ ମର୍ଯ୍ୟାଦା ହରିହର ମିଶ୍ର
ନୟାଗଡ଼ କଲେଜର
ଭାରତ ସାହିତ୍ୟେ କବିବୋଲି ଖ୍ୟାତ
ଲଭି ବହୁ ପୁରସ୍କାର ।୫

ପ୍ରଫୁଲ୍ଲ ମହାନ୍ତି ପ୍ରହ୍ଲାଦ ଦଅନ୍ତ
ସଭରେ ଦେଇ ଭାଷଣ
ସଭିକେ ସମାନ ନାହିଁ ବ୍ୟବଧାନ
ଚିହ୍ନାନ୍ତି ଦେଇ ପ୍ରମାଣ ।୬



## ମହାନ ନମ୍ରତା

ମହାବଳ ସଙ୍ଗେ ସରିକ ହୋଇବ
ଏ ଅନାଡ଼ି ଗୁଗଚଲ
ସାର୍ଦ୍ଦୂଳ ମାଡିଲେ ବୁଝି ହଜିଯିବ
ଗୁହୁଁ ଥିବ ବଳବଳ ।୧

ଭଲ୍ଲୁକ ମର୍କଟ ଗଡ଼ଜାତ ରାଜ୍ୟ
ବୋଲି କଟକ କହନ୍ତି
ସଙ୍କେ ମନେଛଖ ଗଡ଼ଜାତ ଜୀବ
ସଭିଙ୍କ କହ୍ନି ଭଗାନ୍ତି ।୨

ସୂର୍ଯ୍ୟବଂଶୀ ରଜା ଶ୍ରୀ ରଘୁନନ୍ଦନ
ସୁମରିଲେ ହନୁମାନ
ଶ୍ରୀଲଙ୍କା ପତନ ହୋଇଲା ଆସନ୍ନ
ରାକ୍ଷସ ହେଲେ ନିଧନ ।୩

ଅତି ସୁବାସିତ ହେଲେକ ବାସଙ୍ଗ
ମାଳତି ସଙ୍ଗେ କି ଭୁଲ
ହଟାରେ ମେଣ୍ଢାରେ ବାନ୍ଧିଲେ ବଜାରେ
ଟଣ୍ଡୁ ସଙ୍ଗେ ହେବ ମୂଲ୍ୟ ।୪

ସ୍ୱାସ୍ଥ୍ୟସଙ୍ଗେ କାହିଁ ହାଟକ ସମାନ
ଛଲେକ ହେବ ଗହଣା
ସାଗର ସଙ୍ଗେକି ସମାନ ସରିତ
ଟୋକହସା ହେବ ଯିନା ।୫

ମେରୁସଙ୍ଗେ ସମ ହେବକି ଭୂଇଁର
ଗୁଞ୍ଜର ସମ ଶସକ
ମୂର୍ଖ ଯଣ୍ଡ ଗର୍ବ ବଡ଼ିମା ଦେଖାଏ
ଜଗତ କହିବ ଠକ ।୬

## ନୟାଗଡ଼ କାହିଁକି ପ୍ରସିଦ୍ଧ ?

ତୀର୍ଥ ଧାମଙ୍କର କଥାଇଲେ କାଳ
ଲୁଷି ଅଭଣ୍ୟ କାନନ
ଲେଖିଥିଲ ବନ୍ଧୁ ଦେଖିବାକୁ ଏଣ୍ଟ
ଆମେ କେଡ଼େ ଭାଗ୍ୟବାନ ।୧

ଏ ମାଟି ମଦର ନଜାଣି କେ ଅଛୁ
ଘୋଷଇ ସାରା ସଂସାର
ମହା ମହାରଥି ପାଇ ସୁଖ ଶାନ୍ତି
ଲଭି ସମ୍ପଦ ସକଳ ।୨

ବାଞ୍ଛାନିଧି ବ୍ରହ୍ମା ଥିଲେ ବାଣଙ୍କାର
ନଥାଏ ଡର ଖାତର
ଜମି ବନ୍ଧାଦେଇ ବାଣକୁ ଲଗାନ୍ତି
ଥିଲେ ବଡ଼ କଡଖୋର ।୩

ନାନା ନୃତ୍ୟଗୀତ ବାଦ୍ୟ ସଙ୍ଗୀତ
ରହିଛି ଜଗତେ ଖ୍ୟାତ
ନୟାଗଡ଼ କର୍ଣ୍ଣୀ ଚଣ୍ଡିଡଗେ ମାତ
ପୂରୁବୁ ଅଛି ବଖ୍ୟାତ ।୪

ନୟାଗଡ଼ ଜନ ଅଟନ୍ତି ମହାନ୍
ପାଇ ଉଚ ସନମାନ
ଖାର ଚକ୍ରେ ଚଢା ନୟାଗଡ଼ ବାସୀ
ସବୁଠି ଉଚ ଆସନ ।୫

ସୁବାସ ସୌରଭ ମହିମା ଗୌରବ
ଦେଶ ବଦେଶରେ ଖ୍ୟାତ
ଭକ୍ତ ହୋଇଛନ୍ତି ପ୍ରଭୁ ବାରମ୍ବାର
ଦେଖି ମିଳେ ଶାନ୍ତି ମୁକ୍ତି ।୬

ମତ୍ତହସ୍ତୀ ପରି ଅଟେ ବଳଶାଳୀ
ଅଦ୍ଭୁତ ବଳ ସାହସ
ବୁଦ୍ଧି କଉଶଳେ ନଥିବ କେ ହଳ
ସର୍ବ ଗୁଣରେ ସରସ ।୭
ନୟାଗଡ଼ ଝୁଅ ଜଣାଇ ଦୁନିଆଁ
କେତେହେବ ସତ୍ତ୍ୱଙ୍ଗ ତା ସରି
ବିପଦେ ଆପଦେ ସାହାଯ୍ୟ କରଇ
ଭକ୍ତାଙ୍କରେ ପ୍ରାଣେ ଢ଼ାଳ ।୮
ଓଡ଼ଗ୍ରାମ ଧାମେ ଋଷିଙ୍କ ଆଶ୍ରମେ
ମନ୍ତ୍ର ଶିଖିକଲେ ସେବ
ଉପେନ୍ଦ୍ର ଭଞ୍ଜ ଗଦାଧର ସିଂହ
କରିଯାଇ ହେଲେ କବି ।୯



## ସ୍ୱାଧୀନତା ପରେ ନୟାଗଡ଼
## ସାହିତ୍ୟ କଳାର ଅଭିବୃଦ୍ଧି

ବୁଢ଼ା ବୁଢ଼ିଆଣୀ ଜଳ ଭଣ୍ଡାରକୁ
ନିର୍ମାଣିଲେ ସରକାର
ହଜାର ହଜାର ଏକର ଜମିରେ
ମାଡ଼ିଲା ଜଳସମ୍ଭାର ।୧
ଦେଶପାଇଁ ପ୍ରାଣ ଧନ ଢ଼ାଳିଦେଇ
ଗଢ଼ିଛନ୍ତି ପାଠାଗାର
ହୃଦୟ ପୂରଇ ଦାଶରଥି ବାବୁ
ମଣିଷ ମଧ୍ୟରେ ସାର ।୨

ବାଞ୍ଛାନିଧି ଭଳି  କାର କଳାନିଧି
ଗଳ୍ପ ସାଗର ହୋଇଲେ
ରଙ୍ଗମଞ୍ଚ ଉପରେ  ଅଭିନୟ କଲେ
ଏକାକି ଭିନ୍ନ ସ୍ୱରେ ।୩

ଯେତେବେଳେ ଦୃଷ୍ଟି  ପଡ଼ିଲା ତା'ଠାରେ
ରାଜ୍ୟ ସରକାରଙ୍କର
କଳାକାର ପୁଅକ  ସ୍ୱୀକୃତି ପାଇଲେ
ବାଢ଼ାଇଲେ ଆଦର ।୪

ଭ୍ରମରବର ଜେନା  ଉଦାର ହୃଦୟ
ନୟାଗଡ଼ ଅଫିସର
ତାଙ୍କର ଚେଷ୍ଟାରେ  ଶିକ୍ଷାର ବିକାଶ
ପ୍ରକାଶିଲା ଦୃତତର ।୫

ନୟାଗଡ଼ ମହା-  ବିଦ୍ୟାଳୟ କର
କଲେ ଜନ ଉପକାର
ଭଲକାମ କଲେ  ସୁନାମ ବଢ଼ଇ
ଏହି ପୃଥିବୀ ପୃଷ୍ଠର ।୬

ଏହି ନୟାଗଡ଼  ଜନ୍ମାନ ସଜ୍ଜନ
ଅଟନ୍ତି ଉଦାର ମନା
କାର୍ଯ୍ୟକ୍ଷେତ୍ରେ ଟେକ  ରଖି ପାରିଛନ୍ତି
ଲଭି ବିଭୁଙ୍କ କରୁଣା ।୭

ଦ୍ୱିଗୁଣ ଭୂକର  ଦେଲେ ପ୍ରଜାଗଣ
ମହାବିଦ୍ୟାଳୟ ପାଇଁ
ଶିକ୍ଷାର ବିକାଶ  କରିବ ପ୍ରକାଶ
ନୟାଗଡ଼ ହେବ ଜୟୀ ।୯

ନକୁଳ ରଥ ଓ ପରିକ୍ଷିତ ନନ୍ଦ
ଜାଙ୍କ ସେବା ସମ୍ଭାର
ସେବାକାର୍ଯ୍ୟ ପାଇଁ ଗଉରବ ରଖି
ଅଛନ୍ତି ନୟାଗଡ଼ଇ ।୮

ରଘୁନାଥ ଦାସ ଉଦ୍ୟମ ବଳରେ
କଟେଲ୍ ଉଚ୍ଚ ବିଦ୍ୟାଳୟ
ଏହି ଅନୁଷ୍ଠାନ ନୟାଗଡ଼ ମଧ୍ୟେ
ହୋଇଅଛି ଜନପ୍ରିୟ ।୯

ପୋଲିସ ଟ୍ରେନିଙ୍ଗ ସେଣ୍ଟର ଖୋଲିଛି
ଏହି ଗୌରବ ଭୂଇଁ
ଏହି ନୟାଗଡ଼େ ଶିକ୍ଷା ପାଉଛନ୍ତି
ଦେଶର ସୁରକ୍ଷା ପାଇଁ ।୧୦

ସାଗର ପରିଚୋ। ଉଦର ଅଟଇ
କଳା ନୁହଁଇ ଅନ୍ତର
କୋଳରେ ବଢ଼ାଇ ଉଡ଼ାଇ ପାରନ୍ତୁ
ନାହିଁ କାହାକୁ ଖାତିର ।୧୧

କୋଟିକୋଟି ପ୍ରାଣୀ ଧରିଛୁ ଜନନୀ
ସୁଧାସମ ଦ୍ରବ୍ୟ ଦେଇ
ଡାକିଅଛୁ "ମା" ପ- ରି ଭୁ ଆଦରେ
ଧନ୍ୟ ଧନ୍ୟ ସ୍ନେହ ମୟୀ ।୧୨

ପବିତ୍ର ଭୂମିରେ କୋଟି ସନ୍ତାନେ ମୋ
ଆଶ୍ରା କରି କଲେ ବାସ
ଲଭି ଶୁଖ ଶାନ୍ତି ହେଲେ କୋଟିପତି
ନିବାଧେ ହୋଇ ଉଲ୍ଲାସ ।୧୩



# ନୟାଗଡ଼ କଚେରୀ ଶୋଭା ବର୍ଣ୍ଣନା

(ରାଗ-ଭୂପକଲ୍ୟା)

କେଡ଼େ ଶୋଭା ଦିଶୁଅଛି କଚେରୀ
ନିର୍ମାଣ ଅଛି ଧନ୍ୟ ଶିଳ୍ପୀକାରୀ
ଧାଡ଼ି ଧାଡ଼ି ଭବନ ଝଟକୁଛି
ପ୍ରଶସ୍ତ ଦଣ୍ଡର ଶୋଭା ପାଉଛି ସେ
ଦିଶେ କେଡ଼େ ମନୋହର ଯେ
ଶହ ଶହ ଲୋକ ରୁଣ୍ଡ ହେଉଥାନ୍ତି
ଦିଶେ ଅତି ଚମତ୍କାର ଯେ ।୧
ଚୂନ ପଥରରେ ଗାନ୍ଥୁ ଯୋଡ଼େଇ
ଗଢି ଦେଇଛି ସମାନ ମେଳାଇ
ଦେଖି ଇଞ୍ଜିନିୟର ହୁଅନ୍ତି ଧାଣି
କଳା ନଗାର ମୂଣ୍ଡ ଯାଏ ଘୂରି ସେ
ପ୍ରତି ଦୁଆରେ ଖିଲଣ ଯେ
ନାନା ତରୁଲତା ଫୁଲ ମଣ୍ଡଳଇ
ଶୋଭେ ଭିତାର ପ୍ରାଙ୍ଗଣ ଯେ ।୨
ରାଜ ସିଂହାସନ ଧର୍ମରାଜସ୍ତୁ
ବିଚାର ହୁଅଇ ନ୍ୟାୟ ଅନ୍ୟାୟ
ଅଫିସର କର୍ମଚାରୀ ଓକିଲ
କେସରେ କର୍ମି ଉଠାଇ ମେସଲ ସେ
କି ସୁନ୍ଦର ଦରବାର ଯେ
ପରାଧୀନ କାଳ ଠାରୁ ଏହି ଯୁଗ
ଅଟଳ ସରତ ସୁର ଯେ ।୩

ନୟାଗଡ଼ ଅଟେ ଅତି ମହାନ୍
ଚଳାଚଳ ସହସ୍ରାଧିକ ଜନ
କଚେରୀ ଘରେ କର୍ମା ପେସ୍କାର
ଅଜସ୍ର କାମ ବିଭିନ୍ନ ପ୍ରକାର ସେ
ଲୋକଙ୍କ ସୁବିଧା ପାଇଁ ଯେ
ଖଟନ୍ତି ଏସ୍.ଡି.ଓ. ତହସିଲଦାର
ନୟାଗଡ ହିତ ପାଇଁ ଯେ ।୪
ଦେଓ୍ୱାନୀ କୋର୍ଟ ଅତି ବଗୁରକ
ଜମାଦାର ଗୁରୁ ଗାଇଜ ଲୋକ
ଓକିଲ୍ ମୋହରୀ କୋର୍ଟେ ଲଢ଼ନ୍ତି
ଲଢ଼ି ଲଢ଼ି କାର୍ଯ୍ୟ ଜିତା କରନ୍ତି ଯେ
ସନ୍ତୋଷ ଜନଙ୍କ ପାଇଁ ଯେ
ଧନ୍ୟ ନୟାଗଡ଼ ସର୍ବଗୁଣେ ବଡ଼
ଗାଇଜ ହସି ଉଠଇ ଯେ ।୫



## ଆମ ନୟାଗଡ଼ କେତେ ବଢ଼ିଆ
## ଗରବ ମହିମା ସବୁଦିନଆଁ

ସର୍ବ ଗୁଣେ ପୂର୍ଣ୍ଣ          କଳାରେ ନିପୁଣ
ଧନ୍ୟ ନବଦୁର୍ଗ ଭୂଇଁ
ଏ ପୁଣ୍ୟ ଭୂଇଁରେ          କୋଟି ଦେବାଦେବୀ
ବିଜେ ଜଗତ ଗୋସାଇଁ ।

ନୟାଗଡ଼ ଶୋଭା          ଝୁଁଟେକ ଉଠାଇ
ଖଣ୍ଡପଡ଼ା ଛକ ଲାଗି
ଜନ କୋଳାହଳେ          ମୁଖରିତ ହୁଏ
ଆଖି ଦେଖି ଯାଏ ଲଖି ।
ଧାଡ଼ି ଧାଡ଼ି ଗାଡ଼ି          ଲୁଟେଲ୍ ରଙ୍ଗଚଙ୍ଗ
ଝର୍ମି ଉଠଇ ନଗର
ନାନା ରଙ୍ଗେ ଶୋଭେ          ଦୋକାନ ବଜାର
ଧୂମ୍‌ଧାମେ କାରବାର ।
ମୁଣ୍ଡଖାଳ ଭୁଣ୍ଡେ          ମାଈ ଚଷାଙ୍କ
କରନ୍ତି ନାନା ଫସଲ
ବଜାରରେ ବିକୀ          କରଣ ପାଆନ୍ତି
କଠିନ ଶ୍ରମର ମୂଲ୍ୟ ।
ନୟାଗଡ଼ ଫଳ          ମୂଳ ସୁସ୍ୱାଦରେ
ଭୁଞ୍ଜିବାକୁ ରୁଚିକର
ଦୋକାନ ବଜାର          ହୁଏ ପରିପୂର୍ଣ୍ଣ
ଖାଉଟିଏ ମାଡ଼ି ଗୋଳ ।
ଦିଲ୍ଲୀ କଲିକତା          ବମ୍ବେଇ ମାନ୍ଦ୍ରାଜୁ
ଆସିଦେଲେ କୋଟିପତି
ଖାଇଗଲେ ପିବ          ଭୁଲି ନପାରିବ
ଏହି ନୟାଗଡ଼ ମାଟି ।
ସାରା ଓଡ଼ିଶାର          ଯାନ ଚଳାଚଳ
ନୟାଗଡ଼ ଦେଇ ଯାଏ
କଟକ ନଗର          ଠାରୁ ବଲାଙ୍ଗିର
ଭବାନୀପାଟଣା ଯାଏଁ ।

କୋଟି କୋଟି ଟଙ୍କା ତେଇ ସରକାର
କଲେ ରଚନ କାରଖାନା
ବେକାର ସମସ୍ୟା ଦୂରଭୂତ ହେଲ
କଲେ ସଫଳ କଳ୍ପନା ।
କଳ କୁଟ୍ଟେଁ ତୋର ମହିଁମା ଅପାର
ଭଲ ଭଲ ନୂଆ ନୂଆ
ପୂର୍ବ ପରିଚିତ ଅଛି ନାମ ଖ୍ୟାତ
ନୟାଗଡ଼ ବାଘ ଛୁଆ ।
ତୋ ଯଶ କୀରତି ଚଉଦିଗେ ବ୍ୟାପୀ
କର କଳା ଓଡ଼ିଶାରେ
ଧନ୍ୟ ନୟାଗଡ଼ ଶ୍ରୀକ୍ଷେତ୍ର ପରସ୍ତ
ହସି ଉଠେ ଗର୍ବରେ ।
ହଅଁ ଦେଉଳକୁ ଚଢ଼ିଯାଇ ଅଛି
ନୟାଗଡ଼ ଶିଳ୍ପୀ ଭାଇ
ନବଦୁର୍ଗା ମାତ ପଦେ ପ୍ରଣମୁଛି
ତୋର ଅନ୍ନଜଳ ଖାଇ ।



## ନୟାଗଡର ବିଶିଷ୍ଟ ସଂକୀର୍ତ୍ତନ ଗାୟକ

ବାଙ୍କଶାଳୁଆ ଗାୟକ ଗୌରାଙ୍ଗ
ନବକିଶୋର କାଳିକାପ୍ରସାଦ
ଝିଙ୍କିଗୁରୁ ବାୟଙ୍କ ମାନପୁର
ଗାଣ୍ଡୁ ଖଣ୍ଡା ବୈଦ୍ୟନାଥ ଆବର
ଯୋଗୀ ସ୍ୱାଇଁ ସାଲୁଣୀ ଯେ
ବଢ଼ାଇଲେ ସାର ଓଡ଼ିଶା ସସ୍କୃତି
ହୋଇ ଗାୟକ ଅଗ୍ରଣୀ ଯେ ।୧
ଦେବରାଜ ଲକ୍ଷ୍ମଣ ମହେଶ୍ୱର
ଅର୍ଜ୍ଜୁନ ଆନନ୍ଦ ଶ୍ରୀ ହରିହର
ଇଶ୍ୱର ସାହୁ ଗୋବର୍ଦ୍ଧନ ନୃତ୍ୟ
ଅକ୍ରୁର ଭଗବତ ଝିଲି ଅଚ୍ୟୁତ ଯେ
ଗଣ୍ଡ ଖୋଳ, ତାଳ ଗୀତ ଯେ
ଶ୍ରୀନାଥ ସାହୁ ବାଞ୍ଛା ସେନାପତି
ଶ୍ରୀ ମଦନ ମହାପାତ୍ର ଯେ ।୨



## ନୟାଗଡ଼ର ଲେଖକବୃନ୍ଦ

କବିଭୂମି ରୂପେ ଖ୍ୟାତ ନବଦୁର୍ଗ ନାମ
ଖ୍ୟାତନାମା କବିଙ୍କର ଅଟେ ଜନ୍ମସ୍ଥାନ ।

ସାହିତ୍ୟ ସଂସ୍କୃତ ଭାଷା ଅଟଇ ରଚନ
ଶ୍ରେଷ୍ଠ କବି ଗଦାଧର ଦୁର୍ଗାମାଧବ ମିଶ୍ର ।

କବି ହରେକୃଷ୍ଣ ପଣ୍ଡା ମହେଶ୍ୱର ନନ୍ଦ
ଦାମୋଦର କବିଲେଖା ଅପାର ଆନନ୍ଦ ।

ବିଶ୍ୱନାଥ ଚମ୍ପତିଙ୍କ ଲେଖାର ଚାତୁର୍ଯ୍ୟ
ରଘୁ ପଟ୍ଟନାୟକଙ୍କ କବିତା ଆଶ୍ଚର୍ଯ୍ୟ ।

ପୂର୍ଣ୍ଣଚନ୍ଦ୍ର ଶୁଦ୍ଧଦେଓ ପୂର୍ବରୁ ଲେଖକ
ଭଗବାନ ଦାଶଙ୍କର ଲେଖାର ଯମକ ।

ଯଦୁନାଥ ଦାସଙ୍କ ଲେଖାର ମାଧୁରୀ
ଭାବଧାର ଗୁଚ୍ଛରେ ଭରିଅଛି ପୁଷ୍ପ ।

ଦୁର୍ଯ୍ୟୋଧନ ଲେଖକ ଯେ ଶୃଙ୍ଖଳ ସରଳ
ଗଙ୍ଗାଧର ରଥଙ୍କର କବିତା ମଞ୍ଜୁଳ ।

ଗୌରାଙ୍ଗ ଅର୍ଜୁନ ଆନନ୍ଦଙ୍କ ଲେଖା ସାର
କୈଳାସ ପାଣିଗ୍ରାହୀ ଲେଖାରେ ସାଗର ।

ପଞ୍ଚାନନ ଜନାର୍ଦ୍ଦନ ଲେଖାରେ ସୁନ୍ଦର
ହରି ତ୍ରିପାଠୀଙ୍କ ଲେଖା ମନ ମୁଗ୍ଧକର ।

ହରିନାଥ ପଟ୍ଟନାୟକ କାବ୍ୟ ଚମତ୍କାର
ଧନେଶ୍ୱର ଆଚାର୍ଯ୍ୟ ଲେଖା ସରସ ସୁନ୍ଦର ।

ସତ୍ୟବାଦୀ ମିଶ୍ରଙ୍କ ମତ ଶୈଳୀ ଭାଷାରେ
ଭଜନ ଲେଖନ୍ତି ନବମିଶ୍ର ଗମ୍ଭୀର୍ଯ୍ୟରେ ।
ନୟାଗଡ କବିକୁଳ ଝଙ୍କଲେ ବିଖ୍ୟାତ
ଲେଖିକେ ଶଶୀଧର ଦାଏ ଜ୍ଞାନାମୃତ ।



## ନୟାଗଡ଼ ପାଲା ଗାୟକବୃନ୍ଦ

ବୀରଭୂମି ନୟାଗଡ ଆମର ଗୌରବ
ଅପରୂପ ଶୋଭାଭାର କେ ବର୍ଣ୍ଣି ପାରବ ।
ଧନ, ଜ୍ଞାନେ, ଗୁଣମାନେ ନୁହଇଁ ସେ ନ୍ୟୂନ
ଐତିହାସିକ ଗୌରବରେ ଲଭିଛି ସମ୍ମାନ ।
ପାଲାକାର ତାରେଶ୍ୱର ଖୋଳ ଗିନି ନୃତ୍ୟ
ଗାୟକ ସମ୍ରାଟ ବିଶ୍ୱନାଥ ସୁବିଖ୍ୟାତ ।
ରଜୁ ମହାପାତ୍ର ଗିରିଧାରୀ ନୃତ୍ୟକାରୀ
ମାଧବ ମୋହନ ପାଲା ହେଉଛନ୍ତି ଧୁରୀ ।
ଶ୍ରୀ ଗାୟକ ସୋମନାଥ ଉଦୟନାଥ ରଥ
ଗୀତ, ନୃତ୍ୟ, ଛଇ, ଛଟା ହସିଲଠେ ଦେଶ ।
ଶ୍ରୀ ଗାୟକ ଶନାୟକ ଶ୍ରେଷ୍ଠ ବୃନ୍ଦାବନ
ଶ୍ରୀନିବାସ ବଳଭଦ୍ର ଗାୟକ ସଜନ ।

ଗୋବିନ୍ଦ ପଣ୍ଡା ଗାୟକ ପ୍ରଫୁଲ୍ଲ ଷଡ଼ଙ୍ଗୀ
ତ୍ରୀନାଥ ଶ୍ରୀ ଦଗମ୍ବର ନୃତ୍ୟ ରସଭଙ୍ଗୀ ।
କୃଷ୍ଣସ୍ୱାଇଁ ଗୋବିନ୍ଦଗୁରୁ ଦାମୋଦର ଜେନା
ଗୋପାଳ ଷଡ଼ଙ୍ଗୀ ପାଳ ସବୁଠାରେ ଜଣା ।
ବେଣୁ ବୈକୁଣ୍ଠ ପଣ୍ଡା ଉଦୟନାଥ କର
ଅମିନ ଲେଙ୍କା ଚଇଣ୍ଡ ସ୍ୱାଇଁ ଗଙ୍ଗାଧର ।
ଝଲ୍ଲ ପୁରନ୍ଦର ଗାୟକ ଗୋପିନାଥ
ଶଙ୍କର ଦାସ ମଦନ ନନ୍ଦ ଶ୍ରୀ ପ୍ରମୋଦ ।
ବାମନ ମହାପାତ୍ର ଯେ ଲକ୍ଷ୍ମଣ ବାରିକ
ଶଶୀଭୂଷଣଙ୍କ ତାନ ମାନ ଯେ ଚହକ ।
ଜଗନ୍ନାଥ ରାଧାଶ୍ୟାମ କୃଷ୍ଣଚନ୍ଦ୍ର ମିଶ୍ର
ସହଦେବ ତ୍ରିଲୋଚନ ଯାଗେଶ୍ୱର ଭସ ।
ଜଗବନ୍ଧୁ ମହାଦେବ ଯେ ଶ୍ୟାମସୁନ୍ଦର
ଚନ୍ଦ୍ରମଣି ଅଭିମନ୍ୟୁ ସନ୍ତୋଷ କୁମାର ।
ଅଗାଧୁ ଶ୍ରୀ ବିଶ୍ୱନାଥ ମନୋଜ ରଞ୍ଜନ
କରନ୍ତି ପାଲ ଗାୟନ ଭେ ନୋହେଁ ସମାନ ।
ସୁଧାଂଶୁ ଗାୟକ ଯେ ଧନେଶ୍ୱର ପଳଭା
ଖୋଳତାଳ ନୃତ୍ୟକର ହୋଇଛନ୍ତି ଜଡା ।
ଅଗାଧୁ ଭକ୍ତାଷ ପାଲ ଲାଗଇ ହରଷ
ନୟାଗଡ଼ ପାଲକାର ଉକ୍ତଲେ ସରସ ।
ପ୍ରତିବର୍ଷ ବାଧାପାଲି ହୁଏ ଏ ପୀଠରେ
ସୁବଳ ସାହୁ ଯାଆନ୍ତି ପାଲ ବାଛିବାରେ ।



# ଘଟଗ୍ରାଇ ନ୍ୟାୟ ସଂସ୍ଥା

ଧାଇଁ ଧାଇଁ ଲୋକେ ମାମଲା କରନ୍ତି
ଫେଟରୁ କାଟିଣ ପଡ଼ି
ଜମିବାଡ଼ ବିକ ହୋଇ ସର୍ବସ୍ୱାନ୍ତ
ଅକାଳରେ ଯାନ୍ତି ବୁଡ଼ି ।

ଏଣୁ ନୟାଗଡ଼ ଭଦ୍ରବ୍ୟକ୍ତି ଗଣ
ଦେଖିଣ ପ୍ରକୃତ ବସ୍ତୁ
ଭାଇ ଭାଇ ମଧ୍ୟେ ମିମାଂଶା କରନ୍ତି
ପ୍ରକୃତ ନ୍ୟାୟ ଅନ୍ୟାୟ ।

ପାଞ୍ଚ ପଞ୍ଚାଶିରେ ଭଦ୍ରଲୋକ ବସି
କରନ୍ତି ଧର୍ମ ବିଚାର
ନିରପେକ୍ଷ ଭାବେ ଶୁଣାଇ ଦିଅନ୍ତି
ନ୍ୟାୟ ଅନ୍ୟାୟ ଯାହାର ।

ଥିଲେ ଲୋକନାଥ ଶ୍ରୀ ଚନ୍ଦନ ବସ୍ତୁ
ଅନନ୍ତ ବଳୟାର ସିଂହ
ବୈଦ୍ୟନାଥ ସଦା- ଶିବ ମହାପାତ୍ର
ମାରୁଣୀ ଗୁମାନସିଂହ ।

ବାସୁଦେବ ବର୍ମା- ଧର କୃପାସିନ୍ଧୁ
ରଘୁନାଥ ମହାପାତ୍ର
ନୟାଗଡ଼ େ ଭଲ କାର୍ଯ୍ୟ କରିବାକୁ
ନେଇ ଅଛନ୍ତି ଶପଥ ।

ବେଣୁଧର ମହା- ପାତ୍ର ରଜୁଦ୍ଧମ
ଦାମୋଦର ମହାପାତ୍ର
କ୍ଷେତ୍ରବାସୀ ରମ- ଧର ମହାନ୍ତି
ଶ୍ୟାମବନ୍ଧୁ ମହାପାତ୍ର ।

ନୟାଗଡ଼ ଶାନ୍ତ ଶୃଙ୍ଖଳା ରଖନ୍ତି
ଶ୍ରୀ ବିଶ୍ୱନାଥ ପ୍ରଧାନ
ହଜାରି ସାହୁ ପ୍ରଫୁଲ୍ଲ ମହାପାତ୍ର
କରି ନ୍ୟାୟ ସମାଧାନ ।

ଶିବ ସାମନ୍ତରୟ ଭ୍ରମରବର ମାଝି
ଶ୍ରୀ ବିଶ୍ୱନାଥ ନାୟକ
ଭଦ୍ରଲୋକେ ବସି ସୁନ୍ୟାୟ ଦେଇଣ
ରଖିଛନ୍ତି ଗଡ଼ ଟେକ ।

ବିଦ୍ୟାଧର ସ୍ୱାଇଁ ଦୟାନିଧି ଦୋରା
ନାରାୟଣ ମହାରଣା
ସୁଦର୍ଶନ ମଲ୍ଲ କରନ୍ତି ବିଚାର
ନ୍ୟାୟ ଅନ୍ୟାୟ ତୁଳନା ।

ହନାର ହଜାରି ଗ୍ରାମ ଗଣ୍ଡଗୋଳ
ବିବାଦର ଜାତଆନ
ବିଟବକ ଖଟାଇ ସମାଧାନ କରି
ଲଭି ଅଛନ୍ତି ସୁନାମ ।

ଉତ୍କଳ ମୋହରୀ ପଇସା ନପାଇ
ହୁଅନ୍ତି ହା ହତାଶ
ମାମଲାରୁ ଲୋକେ ସୁରକ୍ଷା ପାଇଣ
ଲଭନ୍ତି ମହା ସନ୍ତୋଷ ।

ସବାଷ ସ୍ୱାଇଁ ଶ- ଦାସ ମହାପାତ୍ର
ଦୁର୍ଗାକାନ୍ତ ଧୋବାସାହୁ
ବର୍ତ୍ତସ୍ୱଧିପତ୍ତ ମାନଙ୍କ କରଣ
ଜନମୁଖ ଘୋଷୁଥାନ୍ତି ।



## ନୟାଗଡ଼ର ସର୍ବଶ୍ରେଷ୍ଠ ସ୍ୱେଚ୍ଛାସେବୀ ଅନୁଷ୍ଠାନ

ବୃକ୍ଷ ଗ୍ରାମନାମ କେଶରପୁର
ବୃକ୍ଷ ଘରବନ୍ଧୁ ପରିଷଦର
ସବୁର ମହିମା ରେ ଅନୁଷ୍ଠାନ
ସୃଷ୍ଟି କରି ସୁରକ୍ଷା କଲେ ବନ ସେ
ଶିକ୍ଷା, ସ୍ୱାସ୍ଥ୍ୟ, କୃଷି କ୍ଷେତ୍ର ଯେ
ଜଙ୍ଗଲ ସୁରକ୍ଷା ବୃକ୍ଷାଦି ରୋପଣ
କଲେ ବହୁମନ୍ତ ବ୍ଲକରେ ଯେ ।୧
ନୟାଗଡ଼ ଓଡ଼ଗାଁ ନୂଆଗାଁରେ
ଖଣ୍ଡପଡ଼ା ରଣପୁର ଭାପୁରରେ
ପାଞ୍ଚଶ ଗ୍ରାମ ସୁରକ୍ଷା କରୁଛି
ସାମାଜିକ ଅନୁଷ୍ଠାନ ରହିଛି ଯେ
ବାଇଶି ଗ୍ରାମ ଗଠନ ଯେ
ହଜାର ହଜାର ଏକର ଭୂମିରେ
ହୋଇଛି ବୃକ୍ଷ ରୋପଣ ଯେ ।୨

। ୬୭ ॥

ଉଣେଇଶ ଛୟାଅଶିରେ ଭାଇ
ସୁସ୍ଥ ପରିବେଶ ସୁରକ୍ଷା ପାଇଁ
“ପ୍ରକୃତି ମିତ୍ର” ଜାତୀୟ ପୁରସ୍କାର
“ବୃକ୍ଷମିତ୍ର” ଜାତୀୟ ପୁରସ୍କାର
ଲଭି ଦୁଇ ପୁରସ୍କାର ଯେ
ଅଠାଅଶି ଥିବା “ଇନ୍ଦିରାଗାନ୍ଧୀଙ୍କର”
ଲଭି ରାଜ୍ୟ ପୁରସ୍କାର ଯେ ।
ଉଣେଇଶ ଅଣାନବେ ମସିହା
ବୃକ୍ଷଗ୍ରାମ ଖ୍ୟାତି ଦେଇଥିଲା ନୂଆ
“ଆନ୍ତର୍ଜାତିକ” ପୁରସ୍କାର ଲଭି
ପୁରସ୍କାର ମଧ୍ୟେ ଅତି ଦୁର୍ଲଭ ସେ
ଧନ୍ୟ ଧନ୍ୟ ଅନୁଷ୍ଠାନ ଯେ
ଓଡ଼ିଶାରେ ସର୍ବଶ୍ରେଷ୍ଠ ଲଭିଅଛି
ହୋଇଣ ଅତି ମହାନ୍ ଯେ ।୪



# ଖଣ୍ଡପଡ଼ା

ଖଣ୍ଡିଏ ଖଣ୍ଡିଏ ପଡ଼ା ସୃଷ୍ଟି ହୋଇ
ନାମ ହେଲା ଖଣ୍ଡପଡ଼ା
କଣ୍ଟିଲୋରେ ବିଜେ ଶ୍ରୀ ନୀଳମାଧବ
ପୂଣ୍ୟ ଦେବଙ୍କ ଦେବ ।୧।
ଏହି ପୂଣ୍ୟ ଭୂମି ସ୍ପର୍ଶ କରିଅଛୁ
ଓଡ଼ିଶାର ମହାନଦୀ
ଉତ୍କଳ ଜନନୀ ପଦ ଧୌତ କରି
ହୋଇଅଛୁ ଚିରଞ୍ଜୀବୀ ।୨।
ସାଗର ଲହରୀ ପ୍ରାପ୍ତ ନୃତ୍ୟ କରି
କରଇ ଝଙ୍କାର ନାଦ
କୁଳୁକୁଳୁ ନାଦେ ବହଇ ତରଙ୍ଗେ
ନୀଳମାଧବଙ୍କ ପଦ ।୩।
ବଧ୍ୟା ନଗରୀରେ ପଠାଣି ସାମନ୍ତ
ଲଭିଥିଲେ ପୂଣ୍ୟ ଜନ୍ମ
ତାରା ଚନ୍ଦ୍ର ଗଣି ସିଦ୍ଧାନ୍ତ ଦର୍ପଣ
ରଚିଗଲେ ଚିର ଧନ ।୪।
ସୁଯୋଗ୍ୟ ସନ୍ତାନ ଗଦାଧର ସିଂହ
କବି ସର୍ବଜ୍ଞ ପଣ୍ଡିତ
ସାହିତ୍ୟ ସଙ୍ଗୀତ ଲେଖା ଚାତୁର୍ଯ୍ୟରେ
ଉତ୍କଳେ ସୁ ପରିଚିତ ।୫।

ବିଭୂତି ନୃପତି ଓଡ଼ିଶାରେ ଖ୍ୟାତି
ଚଣ୍ଡିପଣ୍ଡା ପ୍ରତିନିଧି
ରାଜବଂଶ ସ୍ଥିତି ରଖି ପାରିଛନ୍ତି
ପାଳି ପୂର୍ବ କୀର୍ତ୍ତିନିଧି ।୭।
ଚିଙ୍କାଫୁଲା କୂଳେ ସ୍ଥିତ ପଦ୍ମାବତୀ
ପ୍ରଧାନ ବାଣିଜ୍ୟ ସ୍ଥାନ
ଝିଲସାନ୍ଧ ଶିଳ୍ପୀ ଗଢ଼ା ଦଅଁ ମୂର୍ତ୍ତି
କର୍ଣ୍ଣିଲେ କଂସା ବାଦନ ।୭।
ଚମ୍ପା ନାଟେଶ୍ୱର ନାନା ଫଳ ଫୁଲ
ଶୋଭେ ଲତା ବନଗିରି
ସାହିତ୍ୟ ସଙ୍ଗୀତ ଚମ୍ପା ନୃତ୍ୟ ଢଙ୍ଗ
ଦୁଃଖକୁ ଭଏ ପାଶୋରି ।୮।
ଶବର ପଲ୍ଲୀରେ ଜନମି ଥିଲା ସେ
ବିଶ୍ୱାବସୁ ଶବର
ଫଳ ମୂଳ ଦେଇ କରୁଥିଲା ପୂଜା
ନୀଳମାଧବ ଠାକୁର ।୯
ଟସେରେଣ୍ଡା ପାହାଡେ ଆନନ୍ଦ ଉତ୍ସବେ
ସାଙ୍ଗସାଥି ଢଣ୍ଢେଙ୍କ
ଜନ୍ତୁ ପଲ ପଲ ପରବତ ମାଳ
ଦେଖି ମନଯାଏ ମଜ୍ଜି ।୧୦
ନନ୍ଦନ ବନରେ ବିଜେ ଉମାଦେବୀ
ଭକ୍ତଜନ ମନମୋହି
ପଦ ଧୌତ କରେ କୁସୁମି ସରିତ
ବନ୍ଦାଉଛି ସୁନାମୁହିଁ ।୧୧

# ଦଶପଲ୍ଲା

ଗୋଟି ଗୋଟି ଆସି ଦଶପଲ୍ଲୀ ମିଶି
ନାମହେଲା ଦଶପଲ୍ଲା
ଯେଉଁ ଭୂମିଠାରେ ଗଣନା ହୋଇଲା
ତା ନାମ ଗଣିଆଁ ହେଲା ।୧

ଯେଉଁ ଭୂମିଠାରେ ଘୁମୁଣ୍ଡିଆ କଲେ
ନାମ ଦେଲେ ଘୁମୁଣ୍ଡିଆ
ମହାନଦୀ ସ୍ରୋତେ ସଙ୍ଗମ ବୃତ୍ତିଙ୍ଗ
ଦୃଶ୍ୟଟି ଅତି ବଢ଼ିଆ ।୨

ମଣିଭଦ୍ରା ଠାରୁ ରଥଗଡ଼ା ଢ଼ାଠ
ମହାନଦୀ ସ୍ରୋତେ ଯାଏ
ସାତକୋଶୀ ଗଣ୍ଡ କୁମ୍ଭିର ପାଳଣ
ବଉମୂଳ ଶୋଭାପାଏ ।୩

ଭୀମର ପର୍ବତେ ଭୀମ ଖନ୍ଦାନାମେ
ଖଣ୍ଡାଧସା ପାଦଚିହ୍ନ
ଯୁଧିଷ୍ଠି ବଚନ ପାଳି ଭୀମସେନ
କଲେ ଭୋଜି ଆୟୋଜନ ।୪

ମଣିଭଦ୍ରା ଶିଖେ ଗୋସିଂହ ଦଇତ
ସତ୍ୟଭାମାକୁ ରଥରେ
ଆକାଶ ମାର୍ଗରେ ନେଉଥିଲ ବେଳେ
ଫାଲ୍‌ଗୁନ ଡାକେ ଅଭୁରେ ।୫

ମହା ସମରରେ      ଅର୍ଜ୍ଜୁନଙ୍କ ଶରେ
ଗୋସିଂହ ଦଣ୍ଡୀକୁ ମାରି
ଉଦ୍ଧାରିଲେ ଶିଖା      ଚହ୍ଲୀଙ୍କୁ ସହସା
ବିଶ୍ୱ ହାସକୁ ସହାସ ।୭
କଲେ ଉଦ୍‌ଘାଟନ      ଶ୍ରୀ ହରିକରଣ
ବନ ସ୍ୱାସ୍ଥ୍ୟ ଖାଦ୍ୟ ମନ୍ତ୍ରୀ
ନୂତନ ଯୋଜନା      ମାନ ଗଢିଦେଲେ
ଦେଶକଲ୍ ଅଗ୍ରଗତି ।୭
ଦଶପଲ୍ଲା ଗଡ଼ୁ      ହୁଏ ଲଙ୍କାପୋଡ଼ା
ଯାତ ଜଙ୍ଗଲେ ବିଖ୍ୟାତ
ରାମଚନ୍ଦ୍ର ମିଶ୍ର      ନାଟକ ଲେଖକ
ରାଇଜେ ସୁ ପରିଚିତ ।୮



## ରଣପୁର

ରଣାସୁର ନାମେ      ରାକ୍ଷସ ଥିବାରୁ
ରଣପୁର ହେଲା ନାମ
ମଣିନାଗ ଦୁର୍ଗା      ସେଠାରେ ପ୍ରସିଦ୍ଧ
ବିଜେ ଦେବୀ ପିଠ ଧାମ ।୧

ରାଣୀ ଗଜାମାତା ବସନ୍ତ ମଞ୍ଜରୀ
ହେଉଥିଲେ ସ୍ୱାସ୍ଥ୍ୟମନ୍ତ୍ରୀ
ଖୋଲି ଯକ୍ଷ୍ମାଶ୍ରମ ସ୍ୱାସ୍ଥ୍ୟର ବର୍ଦ୍ଧନ
କଲେ ବୁଲି ଦନବାଡ ।୨

ଶାସୂକ ସମ୍ରାଟ ଜନ୍ମଲେ ଏବଟ
ବିଶ୍ୱନାଥ ପଢ଼ଯୋଶୀ
ଏପରି ଗାୟକ ନାହାନ୍ତି ଦେଶରେ
ପୂଜନ୍ତି ପ୍ରତ୍ୟକ୍ଷ ଋଷି ।୩

ଇଂରେଜୀ ଅମଲେ ସାହେବ ଯେ ଆସି
କଲେ ଅନ୍ୟାୟ ବ୍ୟଭାର
ଲୋକବ୍ୟକ୍ତିରେ ବେଜଲ ଗେଟ୍‌କୁ
ମାରିକଲେ ଯଣ୍ଟୁଆର ।୪

ରଘୁ ଦିବାକର ପ୍ରାଣଦଣ୍ଡ ପାଇ
ରଖିଲେ ଟେକ ଦେଶର
ମଣିନାଗ ଶିଖେ ଠାକୁରାଣୀ ସାକ୍ଷୀ
ଜୟ ରଘୁ ଦିବାକର ।୫



ନୀଳାଚଳ ପ୍ରେସ୍, ନୟାଗଡ଼ ।

## କବିଙ୍କର କେତୋଟି ମନମୁଗ୍ଧକାରୀ
## ଗୀତିନାଟ୍ୟ ଓ କାବ୍ୟ କବିତା

ଉମା ଚରଣରୁ ଏବଂ ନୟାଗଡ ପ୍ରଭୃତି ଦୁଇଟି ପ୍ରକାଶିତ

**ପ୍ରକାଶ ଅପେକ୍ଷାରେ—**

ମନ୍ତ୍ରମାମୟୀ ମା ଦକ୍ଷିଣେକାଳୀ
ରାଧା ଦରବାର
ଶବର ଦେବତା
ମାତା ଦେବାଳୟା
ମହାସତୀ ସାବିତ୍ରୀ
ମହାସତୀ ଜାନକୀ
କୃଷ୍ଣସୁଦାମା
ଲବକୁଶ
କବିତା ମାଧୁର୍ଯ୍ୟ
ସରକାରଙ୍କ ଯୋଜନା
କବିତା ରସାମୃତ
ଜୀବନ ରସାମୃତ
କବିତା ସାଭ
ଦାଣ୍ଡଝୁଲୁରେ
ମୋ ଦେଶ ମୋ ମାଟିର ଗାଥା ।

